# କଳ୍ପ ବିଜ୍ଞାନ ଗଳ୍ପ

ଡକ୍ଟର ସୌମେନ୍ଦ୍ର ଘୋଷ


ପ୍ରଚ୍ଛଦ

କାଳୁବାକୀ

ପ୍ରକାଶକ

କନିଷ୍କ

ପାଇନ୍ ବୁକ୍ସ୍

ମଧୁସୂଦନ ନଗର, ତୁଳସୀପୁର

କଟକ - ୮

ବିତରକ

ସତ୍ୟନାରାୟଣ ବୁକ୍ ଷ୍ଟୋର୍

ଟାଇପ୍ ସେଟ୍

ଶିବା ଡି.ଟି.ପି. ସେଣ୍ଟର

ମୁଦ୍ରଣ : ଅପ୍ରେଲ ୧୯୯୬




**ମୂଲ୍ୟ : ଚାଳିଶି ଟଙ୍କା**

**KALPA BIJNANA GALPA**

*by*

Dr SOUMENDRA GHOSH


Published by
Kanishka

Pine Books

Madhusudan Nagar,
Tulsipur, Cuttack - 8




**Rs. 40/-**

## ଏଥିରେ ଅଛି

# କଳ୍ପବିଜ୍ଞାନ ପ୍ରସଙ୍ଗରେ

ମଣିଷ ଯେବେଠୁ ଗଳ୍ପ ସୃଜନ ଆରମ୍ଭ କରିଛି, ସେହି ଦିନରୁ ସେ ତା'ର ପରିଚିତ ଜଗତ ସହ କଳ୍ପନାର ରଙ୍ଗ ମିଶେଇ ନିଜସ୍ୱ ଏକ ଜଗତରେ ବିଚରଣ କରିଛି । ତାର ଏହି ବିଚରଣରୁ ହିଁ ସାହିତ୍ୟ । କଥିତ ଭାଷା ଲିଖିତ ଭାଷାରେ ରୂପାନ୍ତର ହେବାପରେ ହିଁ ସାହିତ୍ୟର ସଂପ୍ରେଷଣ କ୍ଷମତା ଆହୁରି ପ୍ରସାରିତ ହେଲା । ବିଚରଣ କରିବାକୁ ଲାଗିଲା ଦିଗରୁ ଦିଗନ୍ତକୁ ।

ସାହିତ୍ୟ ଯେଉଁଠି କେବଳ ବାସ୍ତବ ଅନୁଭୂତି ଉପରେ ଆଧାରିତ ସେଠି ତାର ବ୍ୟାପ୍ତି ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ । ବାସ୍ତବର ସୀମା ଭିତରୁ ସାହିତ୍ୟ ଯେବେ ବାହାରକୁ ଆସିଛି ସେଠି ସେ ଆଉ ବାସ୍ତବର ନିୟମରେ ଆବଦ୍ଧ ହୋଇନାହିଁ । ସୃଷ୍ଟି ହୋଇଛି ଫାଣ୍ଟାସି । ଫାଣ୍ଟାସି ସାହିତ୍ୟ ସତେ ଅବା ସୀମା ଭିତରେ ଅସୀମ । ଏହି ସାହିତ୍ୟର ଅଙ୍ଗନରେ ବୃକ୍ଷଲତା, ପଶୁପକ୍ଷୀ, ମଣିଷ ପରି ବ୍ୟବହାର କରନ୍ତି । ଦେବତା, ଭୂତପ୍ରେତ, ଯକ୍ଷ କିନ୍ନର ପ୍ରଭୃତି ଚରିତ୍ର ସହଜରେ ଗଳ୍ପ ଭିତରକୁ ପଶି ଆସନ୍ତି । ଗଳ୍ପରେ ମଣିଷ ପଥର ପାଲଟି ଯାଏ । ପାଦ ସ୍ପର୍ଶରେ ପଥର ମଣିଷ ହୋଇଯାଏ । ଏମିତି କେତେ କାହାଣୀ- । ବୁଢ଼ୀମା ଯେବେ ଏ-ଗପ କହିଛି, କହିବାର ମାଧୁର୍ଯ୍ୟରେ ମନ ତାହା ବିନା ଦ୍ୱିଧାରେ ଗ୍ରହଣ କରିଛି । ସେଠି ଯୁକ୍ତି ଆସି ପଥ ଓଗାଳି ନାହିଁ । କ୍ରମେ ଫାଣ୍ଟାସି ସାହିତ୍ୟରେ ତାର ଏକ ନିଜସ୍ୱ ସ୍ଥାନ କରିନେଇଛି ।

ମାନବ ସଭ୍ୟତାର ବିବର୍ତ୍ତନ ସହ ବିଜ୍ଞାନ ଓ ପ୍ରଯୁକ୍ତି ବିଜ୍ଞାନର ଉନ୍ନତି ହୋଇଛି । କ୍ରମେ ତାହା ମଣିଷର ଜୀବନ ଧାରାର ଏକ ଅଙ୍ଗ ବିଶେଷ ହୋଇଯାଇଛି । ମଣିଷର କଳ୍ପଲୋକରେ ନୂତନ ରଙ୍ଗ ନେଇ ବିଜ୍ଞାନ ହୋଇଛି କଳ୍ପ ବିଜ୍ଞାନ । ସତେ ଅବା ବିଜ୍ଞାନର ଘେର ମଧ୍ୟରେ ଏକ ନବ୍ୟ କଳ୍ପ ସାହିତ୍ୟ । ଏହି ଗଳ୍ପରେ ରହୁଛି ଏକ କ୍ଷୀଣ ଯୁକ୍ତି ବୋଧ । କଳ୍ପନାକୁ ଯୁକ୍ତିର ଲକ୍ଷ୍ମଣ ରେଖା ମଧ୍ୟରେ ଆବଦ୍ଧ କରିବା ବାତୁଳତା, ତଥାପି କଳ୍ପବିଜ୍ଞାନ ଗଳ୍ପରେ ଲେଖକମାନେ ଏକ ଅସ୍ପଷ୍ଟ ଲକ୍ଷ୍ମଣରେଖା ଭିତରେ ସଚେତନ ବା ଅବଚେତନରେ ନିଜକୁ ଆବଦ୍ଧ ରଖିଥାନ୍ତି । ଏହି ଦୃଷ୍ଟିରୁ କଳ୍ପବିଜ୍ଞାନ ଗଳ୍ପ ପାରମ୍ପରିକ ଫାଣ୍ଟାସି ଗପ ଠାରୁ ଭିନ୍ନ ।

କଳ୍ପନା ଓ ବିଜ୍ଞାନ ଏହି ଦୁଇ ଶବ୍ଦକୁ ନେଇ କଳ୍ପବିଜ୍ଞାନ । ତେବେ କଳ୍ପବିଜ୍ଞାନ ଗଳ୍ପରେ କେତେ କଳ୍ପନା ଓ କେତେ ବିଜ୍ଞାନ (ଯୁକ୍ତିବୋଧ ଗଳ୍ପ) ରହିଲେ ତାହା ସାର୍ଥକ କଳ୍ପବିଜ୍ଞାନ ଗଳ୍ପ ହେବ ତାର ନିର୍ଦ୍ଦିଷ୍ଟ କୌଣସି ନିୟମ ଏଯାଏ ନିରୂପିତ ହୋଇନାହିଁ । ଏହାର ସଂଜ୍ଞା ଘେନି ପଣ୍ଡିତମାନଙ୍କ ମଧ୍ୟରେ ବିତର୍କର ମଧ୍ୟ ଶେଷ ନାହିଁ । ତେବେ ପଣ୍ଡିତମାନେ ସ୍ୱୀକାର କରନ୍ତି କଳ୍ପବିଜ୍ଞାନ ଗଳ୍ପରେ ବିଜ୍ଞାନର ପ୍ରତ୍ୟକ୍ଷ ବା ପରୋକ୍ଷ ଭୂମିକା ରହିବ, ରହିବ ଅଜଣା ପ୍ରାଣୀର କଥା, ଅଜଣା ଜଗତ କଥା, ଅଜଣା ଦିନର କଥା । ମଣିଷକୁ ନେଇ ଗପ । ତେଣୁ କଳ୍ପବିଜ୍ଞାନ ଗଳ୍ପରେ ରହିବ କିଛି ସାମାଜିକ ସମସ୍ୟା ଯାହା ବିଜ୍ଞାନର ତତ୍ତ୍ୱ ଉପରେ ଆଧାରିତ । ଏହା ସତ୍ତ୍ୱେ କଳ୍ପବିଜ୍ଞାନ କାହାଣୀର ବହୁମୁଖୀ ସମ୍ଭାବନାକୁ କେତୋଟି ନିର୍ଦ୍ଦିଷ୍ଟ ସଂଜ୍ଞାରେ ବାନ୍ଧିବା ସମ୍ଭବ ନୁହେଁ ।

'ଫ୍ରାଙ୍କେନ୍‌ଷ୍ଟାଇନ୍, ଅର ଦି ମର୍ଡାନ୍ ପ୍ରମିଥିଉସ' ପ୍ରଥମ ଆଧୁନିକ କଳ୍ପବିଜ୍ଞାନ ଗଳ୍ପ ରୂପରେ ପଣ୍ଡିତମାନଙ୍କ ସ୍ୱୀକୃତି ପାଇଛି । ମୋର ମନେହୁଏ ମହାଭାରତରେ ଥିବା ଅନେକ ଗଳ୍ପ, ଆଧୁନିକ କଳ୍ପବିଜ୍ଞାନ ଗଳ୍ପର ସମଗୋତ୍ରୀୟ । ମହାଭାରତର ଆଦି ପର୍ବରେ ଭୀମର ସମୁଦ୍ରତଳେ ଥିବା ପାତାଳ ନଗରୀରେ ପ୍ରବେଶ ସେଠାରେ ଅବସ୍ଥାନ ତାପରେ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କେଉଁ ଗୁଣରେ ଆଧୁନିକ କଳ୍ପବିଜ୍ଞାନ ଗଳ୍ପଠାରୁ ଊଣା ?

'ଫ୍ରାଙ୍କେନ୍‌ଷ୍ଟାଇନ୍' ବହିଟି ୧୮୧୮ରେ ପ୍ରକାଶିତ । ବହିଟିର ଲେଖିକା ମେରି ଓଲଷ୍ଟୋନକ୍ରାଫଟ ଶେଲି- କବି ପି. ବି. ଶେଲିଙ୍କ ସ୍ତ୍ରୀ । ଫ୍ରାଙ୍କେନ୍‌ଷ୍ଟାଇନ୍ ବହିଟି ଯେବେ ପ୍ରକାଶ ପାଏ ସେତେବେଳେ 'ସାଇନ୍ସ ଫିକସନ୍' ଶବ୍ଦର ଜନ୍ମ ହୋଇ ନାହିଁ । ସାଇନ୍ସ ଫିକ୍‌ସନ୍ ଶବ୍ଦଟି ପ୍ରଥମେ ବ୍ୟବହାର କରନ୍ତି

ସମାଲୋଚକ ଉଇଲିୟାମ୍ ଉଇଲସନ, ଏକ ବିଶେଷ ଧରଣର ଗଳ୍ପ ଉପନ୍ୟାସକୁ ଚିହ୍ନିତ କରିବା ପାଇଁ ସେ ସାଇନ୍ସ ଫିକସନ ଶବ୍ଦଟିକୁ ବ୍ୟବହାର କରିଥିଲେ ।

ମେରି ଶେଲିଙ୍କ ପରେ କଳ୍ପବିଜ୍ଞାନ ଗଳ୍ପ ରଚନାରେ ଜୁଲଭେର୍ନ ଓ ପରେ ପରେ ଏଇଚ ଜି. ଓଏଲସ କଳ୍ପବିଜ୍ଞନ ଗଳ୍ପ ସାହିତ୍ୟକୁ ଏକ ନୂତନ ଦିଗଦର୍ଶନ ଦେଲେ । ଅଧୁନା ଇଂରାଜୀ କଳ୍ପବିଜ୍ଞାନ ସାହିତ୍ୟକୁ ଯେଉଁମାନେ ସମୃଦ୍ଧ କରିଛନ୍ତି ସେମାନେ ହେଲେ ଆଇଜ୍ୟାକ ଆସିମଭ, ଆର୍ଥର ସି କ୍ଲାର୍କ, ରବାର୍ଟ ହାଇନ, ଫିଲିପ ଡିକ, ରେ ବ୍ରାଡବରୀ ପ୍ରଭୃତି- ।

ଭାରତୀୟ କଥା ସାହିତ୍ୟରେ ବଙ୍ଗଳା ସାହିତ୍ୟରେ ୧୮୯୬ରେ ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ବସୁଙ୍କ ଲିଖିତ 'ନିରୁଦ୍ଦେଶେର କାହାଣୀ' ନାମକ ଗଳ୍ପରୁ ଆଧୁନିକ କଳ୍ପବିଜ୍ଞାନ ଗଳ୍ପର ସୂଚନା ମିଳେ । ପରେ ଏହି ଭାଷାରେ ପ୍ରେମେନ୍ଦ୍ର ମିତ୍ର, ସତ୍ୟଜିତ୍ ରାୟ, ଅଦ୍ରୀଶ ବର୍ମନ, ଅନୀଶ ଦେବ ପ୍ରଭୃତି ଲେଖକ ଉଚ୍ଚ ମାନର ଗଳ୍ପ ଲେଖି ଏହାର ସମୃଦ୍ଧି କରାଇଛନ୍ତି; ତେଲୁଗୁ ଭାଷାରେ ତେକୁମାଲ୍ଲା ରାଜଗୋପାଳ ରାଓଙ୍କ ଲିଖିତ 'ବିହଙ୍ଗାୟନମ' କଳ୍ପବିଜ୍ଞାନ ସାହିତ୍ୟରେ ଏକ ଉଜ୍ଜ୍ୱଳ କୃତି । ମରାଠି ଭାଷାରେ ବାଲଫୋଣ୍ଡକେ, ଜୟନ୍ତ ବିଷ୍ଣ ନାରିଲିକର ପ୍ରଭୃତି ଲେଖକ କଳ୍ପବିଜ୍ଞାନ ସାହିତ୍ୟକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି ।

ଓଡ଼ିଆ ଭାଷାରେ କଳ୍ପବିଜ୍ଞାନ ଆଧାରିତ ଗଳ୍ପ ଏବେ ମଧ୍ୟ ତରଳ ଅବସ୍ଥାରେ ରହିଛି । ଓଡ଼ିଆ କଳ୍ପବିଜ୍ଞାନ ଗଳ୍ପର ପଥିକୃତ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର । ତାଙ୍କ ରଚିତ ପୃଥିବୀ ବାହାରେ ମଣିଷ, ଚନ୍ଦ୍ରର ମୃତ୍ୟୁ, କୃତ୍ରିମ ଉପଗ୍ରହ ଆଦି କଳ୍ପବିଜ୍ଞାନ ଧର୍ମୀ ଗଳ୍ପ ସାଧାରଣ ମାନସରେ ବିଜ୍ଞାନ ପ୍ରତି ଅନୁରାଗ ସୃଷ୍ଟି କରିଛି । ପ୍ରଫେସର ଦେବକାନ୍ତ ମିଶ୍ରଙ୍କ 'କୃତ୍ରିମ ମଣିଷ' ଏ ଦିଗରେ ଏକ ଅନନ୍ୟ ସୃଷ୍ଟି । ପରବର୍ତ୍ତୀ ସମୟରେ ସର୍ବସାଧାରଣ ପଠନ ଉପଯୋଗୀ ବୈଜ୍ଞାନିକ ତଥ୍ୟ, ଫରମ୍ୟୁଲା ଆଦି ଆଧାରିତ ଅନେକ ପ୍ରବନ୍ଧ ବିଭିନ୍ନ ଲେଖକ ଲେଖିଛନ୍ତି । ସେଥିମଧ୍ୟରୁ କେତେକ ଗଳ୍ପ ଆଶ୍ରୟୀ ପ୍ରବନ୍ଧ । ତେବେ ସେ ଗୁଡ଼ିକ କ୍ଷୁଦ୍ରଗଳ୍ପ ପର୍ଯ୍ୟାୟକୁ ଯାଇପାରି ନାହିଁ ।

ଏହି ସଂକଳନରେ ସ୍ଥାନ ପାଇଥିବା ତେରଟି ଗଳ୍ପ ଅମୃତାୟନ, ପ୍ରଜାତନ୍ତ୍ର ସପ୍ତାହାନ୍ତ ପତ୍ରିକା, ଝଙ୍କାର ଆଦି ବିଭିନ୍ନ ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶ ପାଇଛି । ଏହି ଅବସରରେ ମୁଁ ସେହି ସହୃଦୟ ସଂପାଦକମାନଙ୍କୁ କୃତଜ୍ଞତାର ସହ ସ୍ମରଣ କରୁଛି । 'ଦାନ ପ୍ରତିଦାନ' ଗଳ୍ପଟି ପାଠକରି ଓଡ଼ିଆ କଥା ସାହିତ୍ୟର ଅନ୍ୟତମ ସାରଥି ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ତାହାକୁ ଏକ ବିଶିଷ୍ଟ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଁ ସୁପାରିଶ କରିଥିଲେ । 'ଆକାଶର ଦୁନିଆ' ଗଳ୍ପଟିର ନାମକରଣ ସେ କରିଥିଲେ । ତାପରେ ଚିକିତ୍ସା ପାଇଁ ସେ ଚାଲିଗଲେ ଆମେରିକା । ବିଜ୍ଞାନ ଶ୍ରେଣୀଗୃହ ମଧ୍ୟରେ ଆବଦ୍ଧ ନ ରହି ଗଳ୍ପ ମାଧ୍ୟମରେ ସାଧାରଣ ମାନସରେ ଅନୁରାଗ ସୃଷ୍ଟି କରୁ, ଏହା ସେ କହୁଥିଲେ । ଯେତେବେଳେ ଲେଖା ନେଇ ତାଙ୍କୁ ଦେଖେଇଛି ଅତି ଆଗ୍ରହରେ ସେ ତାହା ପଢୁଥିଲେ ଦରକାର ମୁତାବକ ସଂଶୋଧନ କରିଦେଉଥିଲେ । ଆଜି ସେ ଆଉ ନାହାନ୍ତି । ତେବେ ତାଙ୍କର ସେ ପ୍ରେରଣା ଏବେ ମଧ୍ୟ ମୋ ପାଇଁ ପାଥେୟ । ତାଙ୍କର ସ୍ନେହସ୍ପର୍ଶରେ ଏବେ ବି ମୁଁ ରୋମାଞ୍ଚିତ ।

ବନ୍ଧୁ କନିଷ୍କଙ୍କ ଆଗ୍ରହରେ ଗଳ୍ପଗୁଡ଼ିକ ବହି ଆକାରରେ ପ୍ରକାଶିତ ହୋଇପାରିଛି । ଏଥିପାଇଁ ମୁଁ ତାଙ୍କ ନିକଟରେ ଋଣୀ । ଲେଖାଗୁଡ଼ିକ ପ୍ରକାଶ ସମୟରେ ମୁଁ ପାଠକମାନଙ୍କଠୁ ଅନେକ ଉତ୍ସାହ ପୂର୍ଣ୍ଣ ଚିଠି ପାଇଛି । ସେମାନଙ୍କ ସେ ଉତ୍ସାହ ମୋର ସମ୍ବଳ । ଗଳ୍ପରଚନା ବେଳେ କଥାକାର ବନ୍ଧୁ ଜ୍ୟୋତି ନନ୍ଦଙ୍କ ସହ ନିୟମିତ ଆଲୋଚନା ଓ ତାଙ୍କର ମତାମତ ସଦାବେଳେ ମୋତେ ଉତ୍ସାହିତ କରିଛି । ଧନ୍ୟବାଦ ଦେଇ ମୁଁ ତାଙ୍କୁ ଛୋଟ କରିବାକୁ ଚାହେଁ ନାହିଁ ।

**ସୌମେନ୍ଦ୍ର ଘୋଷ**

ବାଖରାବାଦ, କଟକ - ୨

# ଜନ୍ମଦିନ

'ବାରମ୍ବାର ଏହି ଦିନଟି ତୁମ ଜୀବନରେ ଫେରିଆସୁ'। କଂପ୍ୟୁଟର ସ୍କ୍ରିନ୍‌ରେ ଲେଖାଟି ପଢ଼ୁ ପଢ଼ୁ ଦେବବ୍ରତ ଦୀର୍ଘ ନିଶ୍ୱାସଟିଏ ନେଲେ। ଆରଧାଡ଼ି 'ତୁମର ଆଜି ରୁଟିନ୍ ଚେକ୍‌ଆପ୍ ଦିନ। ସଂଧ୍ୟାବେଳେ ତୁମକୁ ତୁମର ଦୁଇଶତତମ ବର୍ଷ ପୂର୍ତ୍ତି ଉପଲକ୍ଷେ ସମ୍ବର୍ଦ୍ଧନା ଦିଆଯିବ।' ପରବର୍ତ୍ତୀ ଲେଖାଗୁଡ଼ିକ କେମିତି ଝାପ୍‌ସା ହୋଇଯାଉଛି। କଂପ୍ୟୁଟର ଆଡୁ ମୁହଁ ବୁଲେଇ ଦେବବ୍ରତ ଖାଇବାରେ ମନୋନିବେଶ କଲେ। ଦୁଇ ପିସ୍ ଡ୍ରାଇ ଟୋଷ୍ଟ ଆଉ ସିନ୍‌ଥେଟିକ୍ ଅରେଞ୍ଜ ଜୁସ। ଏହା ହିଁ ବ୍ରେକଫାଷ୍ଟ ପାଇଁ ବରାଦ। ଏବେ ଦେବବ୍ରତ ନିଜ ଇଚ୍ଛାରେ ଖାଇ ପାରନ୍ତିନାହିଁ। ପ୍ରତିଦିନ ସକାଳୁ ''ଷ୍ଟୁଲ ଇଉରିନ୍'' ପରୀକ୍ଷା ହୋଇଗଲେ କଂପ୍ୟୁଟର କ୍ୟାଲୋରୀ ହିସାବ କରି ଖାଦ୍ୟ ତାଲିକା ତିଆରି କରେ। ଇଚ୍ଛାହେଉ ବା ନହେଉ ସେ ସମସ୍ତକୁ ଗିଳିବାକୁ ପଡ଼େ। ନଖାଇଲେ ପରିଶ୍ରାରେ ଧରା ପଡ଼ିବ, ତା'ପରେ ଡାକ୍ତରମାନଙ୍କ ସେଇ ପରିଚିତ କଥା, 'ଆପଣ ଆମ ସହିତ ସହଯୋଗ କରନ୍ତୁ। ଆପଣ ପୃଥିବୀର ପ୍ରଥମ ବ୍ୟକ୍ତି ଯିଏକି ଦୁଇଶତ ବର୍ଷ ବଞ୍ଚିବାର ସୌଭାଗ୍ୟ ଅର୍ଜନ କରିବାକୁ ଯାଉଛନ୍ତି।' ଇତ୍ୟାଦି ଇତ୍ୟାଦି ...

ସେମାନଙ୍କ କଥାର ଉତ୍ତରରେ ଦେବବ୍ରତ ହୁଏତ କହିବେ, 'ମୋର ଅମୁକ ଜିନିଷ ଖାଇବାକୁ ଇଚ୍ଛାହେଉଛି' ...

ସଙ୍ଗେ ସଙ୍ଗେ ଉତ୍ତର ଆସିବ 'ଠିକ୍ ଅଛି, ଆମେ ଆପଣଙ୍କୁ ସେଇ ବାସନା ସେଇ ସୁଆଦ ନେଇ ସୁପ ବନେଇ ଦେଉଛୁ। ଆପଣ କେବଳ ବାସନା ଓ ସ୍ୱାଦଟା ଆମକୁ କୁହନ୍ତୁ। ଆମେ ପ୍ରୋଗ୍ରାମ କରି କଂପ୍ୟୁଟରକୁ ଫିଡ୍ କରିଦେଲେ, କଂପ୍ୟୁଟର ସେଇ ମୁତାବକ ରେସିପି ଦେଇ ଦେବ। ଦେବବ୍ରତ ଡାକ୍ତରଙ୍କ ମୁହଁକୁ ବଲବଲ କରି ଦେଖନ୍ତି। ଭାବନ୍ତି ସନ୍ତୁଳାର ଯେଉଁ ବାସନା ତା'ର କି ବର୍ଣ୍ଣନା ସେ ଦେବେ! ଆଉ ବୋଉ ହାତ ତିଆରି ବଡ଼ି ଚଟୁଣୀର ସୁଆଦ ...

ରୁଟିନ ଚେକ୍ଅପ ଦେବବ୍ରତ ନିଜେ କରନ୍ତି। ଅଟୋ-ଆନ୍ୟାଲାଇଜରକୁ ବ୍ଲଡ଼ ଓ ଇଉରିନ ସାମ୍ପଲ ଦେଇଦେଲେ ସମସ୍ତ ରିପୋର୍ଟ ଅଧଘଣ୍ଟା ଭିତରେ ପ୍ରସ୍ତୁତ ହୋଇଯାଏ। ତା'ପରେ ପୋର୍ଟେବଲ କ୍ୟାଟ ସ୍କାନ ସାମନାରେ କିଛି ସମୟ ବସନ୍ତି। ସ୍କାନିଂ ସରିଲେ ଇସିଜି କରାନ୍ତି। ସବୁ କାମ ସରିଲେ ସମସ୍ତ ରିପୋର୍ଟକୁ ସେ ତାଙ୍କ ନିଜସ୍ୱ ହେଲ୍ଥ ଡିକ୍ସରେ ରେକର୍ଡ଼ କରନ୍ତି। ସେଦିନ ସବୁ କାମ ସାରି ଅଳସ ହାତରେ ଦେବବ୍ରତ ତାଙ୍କର ହେଲ୍ଥ ଡିକ୍ସଟାକୁ କଂପ୍ୟୁଟରରେ ଫିଡ କଲେ।

କଂପ୍ୟୁଟର ସ୍କ୍ରିନ୍‌ରେ ଗୋଟି ଗୋଟି ହୋଇ ଶାଗୁଆ ଧାଡ଼ି ଆଗକୁ ଗଡ଼ି ଚାଲିଲା। ଆରବିସି, ଡବ୍ଲ୍ୟୁବିସି କାଉଣ୍ଟ, ବ୍ଲଡ଼ ସୁଗର, ସିରମ ଆଲବ୍ୟୁମେନ, ଇଏସଆର ସବୁ ଏନଏଡ଼ି ଅର୍ଥାତ୍ ନର୍ମାଲ। ଡାକ୍ତରୀ ମାପ ଅନୁଯାୟୀ ସେ ସଂପୂର୍ଣ୍ଣ ସୁସ୍ଥ। ପଛେ ପଛେ ନମ୍ବର ଅନୁଯାୟୀ ତାଙ୍କର ପ୍ରତ୍ୟେକ କ୍ରୋମୋଜୋମର ଜେନିକ ମେକ୍ଅପ। ଦେବବ୍ରତ ଲକ୍ଷ୍ୟ କରନ୍ତି। ପ୍ରତି କ୍ରୋମୋଜୋମ ନମ୍ବର ପରେ ଚାରୋଟି ଅକ୍ଷର ଏ.ଟି.ସି.ଜି. ବିଭିନ୍ନ ପରମ୍ୟୁଟେସନ୍ କମ୍ବିନେସନରେ ଆଗେଇ ଚାଲିଛନ୍ତି। ଏହି ଅକ୍ଷରଗୁଡ଼ିକର କୌଣସି ଥଳକୂଳ ଦେବବ୍ରତ ପାଆନ୍ତି ନାହିଁ। ଥରେ ଡାକ୍ତରଙ୍କୁ ଏକଥା ପଚାରି ଥିଲେ। ଡାକ୍ତର କହିଥିଲେ ସେଇ ଅକ୍ଷରଗୁଡିକ ତାଙ୍କ ଜୀବନର ନକ୍ସା-ତାଙ୍କର ବ୍ଲୁପ୍ରିଣ୍ଟ। ସେଇ ନକ୍ସା ନେଇ ସେ ଜନ୍ମିଛନ୍ତି। ତାଙ୍କ ଜୀବନର ସମସ୍ତ କାର୍ଯ୍ୟକଳାପ ସେଇ ନକ୍ସା ଦ୍ୱାରା ପୂର୍ବ ନିର୍ଦ୍ଧାରିତ।

ପିଲାଦିନେ ବାପା କହୁଥିଲେ ପ୍ରତ୍ୟେକ ମଣିଷ ତା'ର ପ୍ରାରବ୍ଧ ନେଇ ଜନ୍ମେ; ତେବେ ଜୀବନରେ ଭଲ କାମ କଲେ ଭଲ ସଂସ୍କାର ପାଇଲେ ଜୀବନରେ ସୁଖ ଆସେ, ଶାନ୍ତି ଆସେ। ଏବେ ଏଇ ନକ୍ସା ହିଁ ପ୍ରାରବ୍ଧ। ପ୍ରାରବ୍ଧ ବଦଳେଇ ହୁଏ ନାହିଁ; କିନ୍ତୁ ମ୍ୟୁଟେସନ୍ ଦ୍ୱାରା ନକ୍ସା ବଦଳେଇ ହୁଏ। ନିକଟରେ ତାଙ୍କର କିଛି ସେଲରେ ଛୋଟ ମ୍ୟୁଟେସନ୍‌ଟିଏ କରିବାକୁ ହେଲା; ଯାହା ଫଳରେ ଏବେ ସେଇ ସେଲମାନଙ୍କରେ ଯେଉଁ ନୂଆ ପ୍ରୋଟିନ ତିଆରି ହେଉଛି, ତାହା ତାଙ୍କର ଶିରା ଏବଂ ଧମନୀରେ କୋଲାଜେନ ଜମିବାକୁ ଦେଉ ନାହିଁ। ତେଣୁ ତାଙ୍କର ରକ୍ତଚାପ ସ୍ୱାଭାବିକ ରହିଛି।

କେତେଦିନ ହୋଇଗଲା- ମୁଁ ପୃଥିବୀକୁ ଆସିଛି। ସଂବର୍ଦ୍ଧନା ସଭାର ଡାୟାସ ଉପରେ ବସି ଏହି କଥା ଭାବୁଥିଲେ ଦେବବ୍ରତ। ବିଜ୍ଞାନ ଭବନରେ ସଭା। ସାମନାକୁ ଚାହିଁଲେ ଦିଶୁଛି କେବଳ ମୁଣ୍ଡମାଳ। ଥାଳି ପେଲି ଦେଲେ ଏ ମୁଣ୍ଡରୁ ସେମୁଣ୍ଡ ଚାଲିଯିବ। ଲୋକ କେତେ ହେବେ? ଆଠଶହ? ହଜାରେ? ଆସନ ତ ମୋଟେ ସାତ ଶହ। କିନ୍ତୁ ପଛରେ ଦି'କଡରେ ଜଙ୍ଗଲ ପରି ମଣିଷ ଠିଆହୋଇଛନ୍ତି। ଉହୁଙ୍କି ଚାହିଁଛନ୍ତି। ସ୍ତବ୍ଧ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରି ରହିଛନ୍ତି।

ବାହାରେ ଖଞ୍ଜା ହୋଇଛି ମାଇକ। ଶକ୍ତିଶାଳୀ ମାଇକ୍। ତା'ପହଞ୍ଚ ଆହୁରି ଶହ ଶହ ଗଜ। ପିଣ୍ଡା ଲଅନ୍, ସେକଡ଼ ସଡ଼କସବୁଠି ସେମାନେ ଥିବେ। ଏଠାକୁ ଆସିଲା ବେଳେ ଦିଶୁଥିଲା ସେ ଦୃଶ୍ୟ।

ସାମନାରେ ବସିଛନ୍ତି ବୈଜ୍ଞାନିକ, ଲେଖକ, ସାମ୍ବାଦିକ- କାହିଁ ଦୂରରୁ କାରରେ ଆସିଛନ୍ତି। ରେଳରେ ଆସିଛନ୍ତି। ଦେଶ ବାହାରୁ ଉଡ଼ାଜାହାଜରେ ଆସିଛନ୍ତି। ଦେଶ-ବିଦେଶର ଜ୍ଞାନ-ବିଜ୍ଞାନର ପ୍ରତିନିଧିମାନେ ଧାଇଁ ଆସିଛନ୍ତି। ସମସ୍ତେ ଆସିଛନ୍ତି ଦେଖିବା ପାଇଁ ଆଧୁନିକ ବିଜ୍ଞାନର କରାମତି, ଯିଏକି ମଣିଷକୁ ଦୁଇଶହ ବର୍ଷ ସୁସ୍ଥ ସବଳ କରି ବଞ୍ଚାଇ ରଖି ପାରିଛି। ସେମାନେ ବୋଧହୁଏ ଦେଖିବାକୁ ଚାହାନ୍ତି କିଭଳି। ସେମାନେ ଶୁଣିବାକୁ ଚାହାନ୍ତି କ'ଣ ତାର ଅଭିଜ୍ଞତା, ଅନୁଭୂତି ଓ କ'ଣ ତା'ର ବାଣୀ।

ପେଣ୍ଡାଲ ଉପରେ ବସିଛନ୍ତି ପ୍ରଫେସର କାନୁନ୍‌ଗୋ, ପତଳା, ତୋଫା ଗୋରା, ବଡ଼ ବଡ଼ ଆଖି ଓସାର କପାଳ ନିର୍ଭୁଲ ଭାବେ ସୁବିନ୍ୟସ୍ତ ସ୍ୟୁଟ ପିନ୍ଧିଛନ୍ତି- ବେକରୁ ଝୁଲୁଛି କଳା ଗାର ଗାର ନାଲି ଟାଇ। ସେ ହେଉଛନ୍ତି ଇଣ୍ଟରନ୍ୟାସନାଲ ଜେରେଣ୍ଟୋଲଜି କଂଗ୍ରେସର ସଭାପତି। ତାଙ୍କର ଡାହାଣ ପଟେ ବାଁକୁଡଳି ଗାଲରେ ହାତଦେଇ ବସିଛନ୍ତି ଦେବବ୍ରତ। ବାମ ପଟେ ଡକ୍ଟର କୁଲି, ଡକ୍ଟର ରାଓ ଓ ଡକ୍ଟର ସାହୁ। ଦେବବ୍ରତଙ୍କ ଡାହାଣ ପଟେ ଡକ୍ଟର ଓନ୍‌ହୋ ଓ ଡକ୍ଟର ଜୁଜୁମ୍ବା।

ସଭାପତି ପ୍ରଫେସର କାନୁନଗୋ ମାଇକ୍ରୋଫୋନ୍ ପଛରେ ଠିଆ ହେଲେଣି। ଦେବବ୍ରତ ସିଧା ହୋଇ ବସିଲେ। ତାଙ୍କ ମୁହଁକୁ ଅନେଇଲେ, ଶୁଣିଲେ, ବିଜ୍ଞାନ ଇତିହାସରେ ଆଜି ଏକ ସ୍ମରଣୀୟ ଦିନ। ଆଜି ବିଜ୍ଞାନ ଦେବବ୍ରତବାବୁଙ୍କୁ ଦୁଇଶହ ବର୍ଷରେ ପହଞ୍ଚେଇଛି। ଦେବବ୍ରତବାବୁ ହେଉଛନ୍ତି ସେଇ ବ୍ୟକ୍ତି- ଯହାଙ୍କର ଶରୀରରେ ତିନୋଟି ପ୍ରଧାନ ଅଙ୍ଗ କୃତ୍ରିମ। ତିନୋଟି କୃତ୍ରିମ ଅଙ୍ଗ ନେଇ ସମ୍ପୂର୍ଣ୍ଣ ସୁସ୍ଥ ଭାବେ ବଞ୍ଚିବାର କୃତିତ୍ୱରେ ଦେବବ୍ରତବାବୁ ଆଜି ବିଶ୍ୱ ରେକର୍ଡ଼ କରିଛନ୍ତି। ଏହି ସଫଳତା ପାଇଁ ଯେଉଁ ଡାକ୍ତର ବୈଜ୍ଞାନିକମାନଙ୍କ ମୁଖ୍ୟ ଅବଦାନ ରହିଛି ସେମାନେ ହେଲେ ଡକ୍ଟର କୁଲି, ଡକ୍ଟର ରାଓ ଓ ଡକ୍ଟର ସାହୁ। ଏହି ତିନି ବୈଜ୍ଞାନିକ ଦେବବ୍ରତବାବୁଙ୍କ ଦେହରେ ହାର୍ଟ, ଲଙ୍ଗସ ଓ କିଡ଼ନି ସ୍ଥାପନା କରିଛନ୍ତି। ଡାକ୍ତରମାନଙ୍କ କହିବା କଥା ଦେବବ୍ରତବାବୁଙ୍କ ଶରୀର ଏକ ଆଶ୍ଚର୍ଯ୍ୟ ଶରୀର। ଯେଉଁ ଶରୀର କୌଣସି ବାହ୍ୟ ପଦାର୍ଥକୁ ସହଜରେ ରିଜେକ୍ଟ କରେ ନାହିଁ ବରଂ ବାହ୍ୟ ପଦାର୍ଥ ସହିତ ମିଳିମିଶି ରହିବାର ଏକ ଅଦ୍ଭୁତ କ୍ଷମତା ତାଙ୍କର ଶରୀର ରଖେ। ତେବେ ସବୁଠାରୁ ବଡ଼ କଥା ଦେବବ୍ରତବାବୁଙ୍କ ସହଯୋଗ। ରୋଗୀର ସହଯୋଗ ବିନା ଡାକ୍ତର କଦାପି ତାଙ୍କ କାର୍ଯ୍ୟରେ ସଫଳ ହୋଇପାରେନା। ଏଠାକୁ ଆସିବାପୂର୍ବରୁ ମୁଁ ଡାକ୍ତରମାନଙ୍କ ସହ କଥା ହେଉଥିଲି, ସେମାନେ ଭାବୁଛନ୍ତି ଏଥର

ଦେବବ୍ରତବାବୁଙ୍କ ବ୍ରେନରୁ କିଛି ସେନାଇଲ ସେଲ ବାହାର କରି ସେଠାରେ କିଛି ଜୁଭେନାଇଲ ସେଲ ସ୍ଥାପନ କରିବେ- ତା'ହେଲେ ଦେବବ୍ରତବାବୁ ବଞ୍ଚିବାର ନୂତନ ସୁଆଦ ପାଇବେ। ମୁଁ ତାଙ୍କ ମେଡିକାଲ ଡିକ୍ସ ପ୍ଲେ କରି ଦେଖିଛି- ଏପରି ନର୍ମାଲ ଶରୀର ସତେ ଦେଖାଯାଏ ନାହିଁ।

ସଭାପତିଙ୍କ କଥା ଶୁଣୁ ଶୁଣୁ ଦେବବ୍ରତ ଭାବିଲେ- ମୁଁ ବୋଧହୁଏ କୌଣସି ଶରୀର ବିଜ୍ଞାପନଦାତାର ପଣ୍ୟ। ବୁଲେଇ ବୁଲେଇ ବିଜ୍ଞାପନଦାତା ତାର ପଣ୍ୟର ସୁଖ୍ୟାତି କରୁଛି। ପିଲାଦିନେ ବସ୍‌ଷ୍ଟାଣ୍ଡରେ ବସପାଇଁ ଅପେକ୍ଷା କଲାବେଳେ କେତେଥର କାନରେ ପଡୁଥିଲା ତରୁଣ ଆୟୁର୍ବେଦିକ ଫାର୍ମାସୀର ଜାଦୁର ମଲମ ଆଉ ତରୁଣ ଭାସ୍କର ଲବଣ। ବହୁଦିନ ପରେ ସେଇ ସ୍ୱର ସେଇ କଥା କିଏ ଯେପରି କହି ଦେଇଗଲା। ଦେବବ୍ରତଠି ଆଜିକାଲି ଏହି ଉପସର୍ଗ ଦେଖାଦେଇଛି। ହଠାତ୍ ଭୁଲିଯାଇଥିବା କଥା, ଭୁଲିଯାଇଥିବା ଦୃଶ୍ୟ- ଏପରିକି ଭୁଲିଯାଇଥିବା ସ୍ୱାଦ ଓ ଗନ୍ଧ ପାଉଛନ୍ତି।

ସଭାପତି କହି ସାରିଲାପରେ ତାଙ୍କ ଅନୁରୋଧରେ ଦେବବ୍ରତ କୁଞ୍ଚୁ କୁଞ୍ଚୁ ହୋଇ ଓଟାରି ହେବାଭଳି ଧୀରେ ଧୀରେ ସତେ ଯେପରି ଗୋଟିଏ ଛେଳିକୁ କିଏ ଭିଡ଼ି ଭିଡ଼ି ପାଣିକୁ ନେଉଛି- ସେଇଭଳି ମାଇକ୍ରୋଫୋନ୍ ପାଖକୁ ଗଲେ। ତାଙ୍କର ଚାଲି ଠିଆହେବାର ଭଙ୍ଗୀ କୌଣସିଥିରେ ବୟସର ଛାପ ନଥାଏ। କେବଳ ଆଖି ଦୁଇଟାରେ କିଏ ଯେପରି ବିଷର୍ଣ୍ଣତାର କଳା ବୋଳି ଦେଇଛି। ନିଦ ଭୋଳରେ ବିଳବିଳେଇବା ପରି ତାଙ୍କ ମୁହଁରୁ ଶବ୍ଦ ଝୁରିଲା, 'ଆଜି ସକାଳେ ମୋତେ ଯେତେବେଳେ ମୋ କମ୍ପ୍ୟୁଟର ଜନ୍ମଦିନର ଶୁଭେଚ୍ଛା ଜଣେଇଲା, ସେତେବେଳେ ମୋର ବହୁତ ଆନନ୍ଦ ହୋଇଥିଲା। ଏ ଦିନଟି ପାଇଁ ମୁଁ ଅନେଇଥିଲି। ମୁଁ ପୃଥିବୀର ପ୍ରଥମ ବ୍ୟକ୍ତି- ଯାହାର ବୟସ ଦୁଇଶହ ପୂର୍ଣ୍ଣ ହୋଇଛି। କ୍ରିକେଟ ଖେଳାଳୀ ପରି ଜୀବନ ଟେଷ୍ଟରେ ମୁଁ ଦୁଇଶହ ରନ୍ କରି ଅପରାଜିତ। ମହାକାଳର ସ୍ପିନ, ଫାଷ୍ଟ, ଗୁଗଲି କୌଣସି ବୋଲିଂ ମୋତେ ଆଉଟ୍ କରି ପାରି ନାହିଁ।

ଏବେ ବ୍ୟାଟଟିକୁ ବାଁ ହାତରେ ଉପରକୁ ଟେକି ମୁଁ ଠିଆହେଇଛି। ଘନ ଘନ ତାଳି ବାଜୁଛି। ଏଇ ଦୀର୍ଘ ଇନିଂସ କେବେ ଆରମ୍ଭ ହୋଇଥିଲା- ଆଉ ମନେ ପଡୁନାହିଁ। ଏକ ଏକ କରି ମୋ ଆରପଟ କ୍ରିଜରେ ସବୁ ଆଉଟ ହୋଇଗଲେଣି। ମୋ ସ୍ତ୍ରୀ, ମୋ ପୁଅ, ବନ୍ଧୁ-ବାନ୍ଧବ ସମସ୍ତେ ଆଉଟ। ଏବେ ଟେଲ ଏଣ୍ଡର ଖେଳୁଛନ୍ତି। ସବୁ ମୋର ଅଣନାତି ପଣନାତି। ଆମ ଭିତରେ ରନ କରିବାର ତାଳମେଳ ରହୁନାହିଁ। ବାଇଶଗଜ ନୁହେଁ, ବାଇଶ ଯୁଗର ବ୍ୟବଧାନ।

ଅନେକ ସମୟରେ ଆଶ୍ଚର୍ଯ୍ୟ ହୁଏ ଯେ କାହିଁକି ମୁଁ ବଞ୍ଚିଛି। ଏବେ ଅବଶ୍ୟ ମୋ ମରଣକୁ ମହାକାଳ ହାତରୁ ଛଡ଼େଇ ନେଇ ବିଜ୍ଞାନୀମାନେ

ମଜା ଦେଖୁଛନ୍ତି। ମୁଁ ତ ପରୀକ୍ଷାଗାର କାର୍ଯ୍ୟପାଇଁ ପିଞ୍ଜରା ଭିତରେ ରଖା ହୋଇଥିବା ଗୋଟାଏ ଠେକୁଆ। ବିଜ୍ଞାନୀ ଡାକ୍ତରମାନେ ତାଙ୍କ ଇଚ୍ଛା ଅନୁସାରେ ମତେ କାଟୁଛନ୍ତି ବଦଳାଉଛନ୍ତି। ମୋ ଲୁହ ସେମାନଙ୍କ ପାଇଁ ସାଲାଇନ ସଲ୍ୟୁସନ ମାତ୍ର। ଆଜି ସଭାପତି କହିଲେ ମୋ ମସ୍ତିଷ୍କକୁ ମଧ୍ୟ ସେମାନେ ବଦଳେଇବେ। ତେବେ ମୋର ଆଉ ରହିଲା କ'ଣ? ମୋ ସ୍ମୃତି। ସେଇ ପୁରୁଣାଦିନର କଥା। ଏ ବିଜ୍ଞାନୀମାନଙ୍କ ପାଖରେ ସେସବୁର କୌଣସି ମୂଲ୍ୟ ନାହିଁ। ଶରୀର ସର୍ବସ୍ୱ ବସ୍ତୁବାଦୀ ବିଜ୍ଞାନ ସେଗୁଡ଼ିକର କି ମୂଲ୍ୟ ଦେବ?'

ଏକା ନିଶ୍ୱାସକେ ଏତେଗୁଡ଼ାଏ କଥା କହିସାରି ଅଣନିଶ୍ୱାସୀ ହେଲାପରି ଅଟକି ଗଲେ ଦେବବ୍ରତ। ଉତ୍ତେଜନାରେ ତାଙ୍କର ଗୋରା ମୁହଁଟା ଆହୁରି ଲାଲ ଦେଖା ଯାଉଥାଏ। କପାଳରେ ବିନ୍ଦୁ ବିନ୍ଦୁ ଝାଳ। ପାଣି ଗ୍ଲାସ୍‌ଟାପାଇଁ ଥରିଲା ହାତଟା ବଢ଼ଉ ବଢ଼ଉ ବସି ପଡ଼ିଲେ ଦେବବ୍ରତ। ମୁଣ୍ଡ ଭ୍ରମିଲା, ଯେମିତି ଆଖି ଆଗରେ ଜୁଲୁଜୁଲିଆ ଦେଖୁଛନ୍ତି, ଦେହ ଥରିଲା, ପାଦ ଟଳିଲା-ଲାଗିଲା ନିରାଧାର ହୋଇ ସେ ଖସିପଡୁଛନ୍ତି କି! ନିକଟରେ ବସିଥିଲେ ଡକ୍ଟର ସାହୁ, ତାଙ୍କର ଉଜ୍ଜ୍ୱଳ ଆଖି ଦେବବ୍ରତଙ୍କ ଉପରେ ବିନ୍ଧି ରହିଥିଲା। ସେ ମୁହୂର୍ତ୍ତେବି ଡେରି କଲେନାହିଁ; ଉଠିପଡ଼ିଲେ। ଦୌଡ଼ିଯାଇ ଦେବବ୍ରତଙ୍କ ଦୁଇ କାଖତଳେ ଯୋଡ଼ିଏ ବଳିଷ୍ଠ ବାହୁ ଭରାଦେଇ ତାଙ୍କୁ ଧରି ପକାଇଲେ। ସଂଗେ ସଂଗେ ଉଠିଲେ ଡକ୍ଟର ରାଓ। ଜନତାଙ୍କୁ ସ୍ଥିର ହୋଇ ବସିବାକୁ ହାତ ପାପୁଲି ଟେକି ଜଣେଇଲେ, ଦୁଇ ପାହୁଣ୍ଡରେ ଝପଟି ଯାଇ ସେ ବି ଦେବବ୍ରତଙ୍କୁ ସାହାହେଲେ। ସେହିପରି ଡକ୍ଟର କୁଲି ଡକ୍ଟର ଓନ୍‌ହୋ ଓ ଜୁଜୁମ୍ବା। ସଭାସ୍ଥଳରେ କ୍ଷୋଭ ଓ ଆଶଙ୍କାର ନୀରବ ବାତାବରଣ ଖେଳିଗଲା।

ଡେରି ନକରି ସେମାନେ ଦେବବ୍ରତଙ୍କୁ ନେଇଗଲେ ଆଇସିୟୁକୁ। ରିମୋଟ କଣ୍ଟ୍ରୋଲ ଧରି ଡାକ୍ତରମାନେ ବିଭିନ୍ନ ସୁଇଚ ଟିପି ଦେବବ୍ରତଙ୍କ ହାର୍ଟ ଓ ଲଙ୍ଗସଟାକୁ ବାଗରେ ଆଣିବାକୁ ଚେଷ୍ଟା କଲେ; ହେଲେ ସେତେବେଳେ ଦେବବ୍ରତଙ୍କର ହାର୍ଟଟା ଗୋଟାଏ ଲଗାମଛଡ଼ା ପାଗଳା ଘୋଡ଼ାପରି ଦୌଡୁଛି। ଆଉ ଲଙ୍ଗସ୍ ଦିଟା କମାରଶାଳର ଭହାପରି ଘନ ନିଶ୍ୱାସ ଛାଡୁଛି। ବିଜ୍ଞାନୀ ଡାକ୍ତର ପରସ୍ପର ମୁହଁକୁ ଅନେଇଲେ। କ'ଣ ହେଲା? କାହିଁକି ହେଲା? କେମିତି ହେଲା? ପ୍ରଥମେ ଅସ୍ପଷ୍ଟ ସ୍ୱରରେ ତା'ପରେ ଘୋର ବାଦାନୁବାଦ। ଶେଷରେ ସେମାନେ ଏକମତ ହୋଇ କମ୍ପ୍ୟୁଟରର ଶରଣାପନ୍ନ ହେଲେ। ସୁଇଚ ଟିପିଲେ। କମ୍ପ୍ୟୁଟର ପର୍ଦ୍ଦାରେ ଭାସି ଉଠିଲା କେବଳ ଗୋଟିଏ ଧାଡ଼ି। 'ମୁଁ ଦୁଃଖିତ'। ତାର ଶେଷ ବକ୍ତବ୍ୟ।



# ଆକାଶର ଦୁନିଆ

ତିନିଶହ ଛବିଶ ଦିନ ମହାକାଶରେ ରହି ଯେଉଁଦିନ ମୋନିକା ନାଭ୍ରାତିଲୋଭା ଓ ତାର ମହାକାଶରେ ଜନ୍ମ ହୋଇଥିବା ସଂତାନ ପୃଥିବୀ ପୃଷ୍ଠରେ ଓହ୍ଲାନ୍ତି, ସେଦିନ କେବଳ ସେମାନଙ୍କୁ ଦେଖିବା ପାଇଁ ମହାକାଶ ଯାନ ଅବତରଣ କ୍ଷେତ୍ରର ଦର୍ଶକ ଗ୍ୟାଲେରୀର ଭିଡ଼ ଯେପରି ଉଛୁଳି ପଡୁଥାଏ। ଗିକଭରି ଭେସଲରୁ ବାହାରି ମୋନିକା ସିଧା ସଳଖ କ୍ୱାରେନ୍‌ଟାଇନ ଘର ଭିତରକୁ ପ୍ରବେଶ କରେ। ପରେ ପରେ ସେଇ ଘରର କାଚ ଘେର ଭିତରୁ ମୋନିକା ବାଁ ହାତରେ ତାର ନବ ଛାତକକୁ କୋଳେଇ, ଅନ୍ୟ ହାତଟିକୁ ଉପରକୁ ଟେକି ସମସ୍ତଙ୍କର ଅଭିନନ୍ଦନ ଗ୍ରହଣ କରେ। ଦୂରରୁ ମହାକାଶ ପୋଷାକରେ ମୋନିକା ଗୋଟିଏ ଯନ୍ତ୍ର କଣ୍ଢେଇ ରବଟ ପରି ଲାଗୁଥାଏ, ହେଲେ ମୋନିକା ଓଠରେ ଲାଗିଥିବା ହସ ସୂଚେଇ ଦିଏ ସେ 'ରବଟ' ନୁହେଁ ମଣିଷ। ମୋନିକାର ହସ ଥିଲା ବିଜୟିନୀର ହସ, ସାଫଲ୍ୟର ହସ।

ହସର ବଡ଼ ଗୁଣ, ତାହା ସହଜରେ ସଂକ୍ରାମିତ ହୁଏ। ମୋନିକାର ହସ ସଂକ୍ରାମିତ ହେଉଥାଏ। ଯେଉଁ ବୈଜ୍ଞାନିକମାନେ ମୋନିକାର ସାଫଲ୍ୟର ଭାଗୀଦାର, ସେମାନେ ଦର୍ଶକ ଗ୍ୟାଲେରୀରୁ ଗର୍ବର ହସ ହସୁଥାନ୍ତି, ଅନ୍ୟମାନେ ସେମାନଙ୍କୁ ବାହାବା ଦେଇ ହସୁଥାନ୍ତି। ସାଧାରଣ ଲୋକ କିଛି ନ ବୁଝି ହସୁଥାନ୍ତି। ହସର ଉଲ୍ଲାସ ମିଳେଇବା ପୂର୍ବରୁ ମୋନିକା ତାର ସଂତାନକୁ ନେଇ କ୍ୱାରେନ୍‌ଟାଇନ ଘରର ଭିତର କକ୍ଷକୁ ପ୍ରବେଶ କରେ। ନିଭୃତ କକ୍ଷରେ ମହାକାଶର ପୋଷାକ ଖୋଲି ମୋନିକା ଭାବୁଆଳୀ ଆଖିରେ ସଂତାନକୁ ଦେଖେ। ଓଠରେ ପୁଣି ଦେଖାଦିଏ ହସ, ଏ ହସ ମା ହେବା ସୁଖର ହସ।

ପର ମୁହୂର୍ତ୍ତରେ ବିମୋହିତା ମୋନିକା ବିମର୍ଷ ହୋଇପଡ଼େ। ଭାବେ ଆହା! ଏ ପୁଅର ଯଦି କେହି ପିତା ଥାଆନ୍ତା? ସେ ମଧ୍ୟ ସଂତାନର ଆଗମନରେ କେଡ଼େ ଖୁସି ନ ହୁଅନ୍ତା? ସଂତାନର ପିତା କିଏ କେବଳ ମା ହିଁ କହିପାରେ,

କିନ୍ତୁ ମୋନିକା ସେ ଅର୍ଥରେ ମା ହୋଇନାହିଁ। ବୈଜ୍ଞାନିକମାନେ ଗୋଟିଏ ଭ୍ରୃଣର ବୃଦ୍ଧି ପାଇଁ ମୋନିକାକୁ ବ୍ୟବହାର କରିଛନ୍ତି। ମହାକାଶ ଯାତ୍ରାର ଦିନ ଠିକ୍ ହେଲା ପରେ ମୋନିକା ନିର୍ଦ୍ଦେଶ ପାଏ କେଉଁଦିନ କେତେବେଳେ ଗର୍ଭ ଧାରଣ କରିବ। ସେଇ ମୁତାବକ ସେ ପ୍ରସ୍ତୁତ ହୁଏ। ତା'ପରେ ଏକ ଶୁଭ ଅବସରରେ ଶୁକ୍ରାଣୁ ବ୍ୟାଙ୍କରେ ଗଚ୍ଛିତ ଥିବା ଏକ ସର୍ବଗୁଣ ସଂପନ୍ନ ଶୁକ୍ରାଣୁ ପେଟ୍ରିଡ଼ିଶର କୃତ୍ରିମ ପରିବେଶ ମଧ୍ୟରେ ଥିବା ନିର୍ଦ୍ଦିଷ୍ଟ ଡ଼ିମ୍ବାଣୁ ସହ ମିଳିତ ହୁଏ। ଡ଼ିମ୍ବାଣୁଟିର ମିଳନୋତ୍ତର ପ୍ରାଥମିକ ବୃଦ୍ଧି ହେଲାପରେ ତାହା ମୋନିକାର ଜରାୟୁରେ ସ୍ଥାପିତ ହୁଏ।

ଏ ସଂତାନ ପାଇଁ ମୋନିକାର ହୃଦୟାବେଗ ରହିବା କଥା ନୁହେଁ। କାରଣ ମୋନିକା ଭଲ ଭାବେ ଜାଣେ ଏ ସଂତାନ ତାର ନୁହେଁ। କିନ୍ତୁ ହୃଦୟର କଥା ମନ କେବେ ମାନିଛି! ମୋନିକା ଦୀର୍ଘ ନିଃଶ୍ୱାସଟିଏ ନିଏ। ପୁଅର ନଥିବା ନାହି କୁ ଦେଖେ। ସଂତାନ ସହ ତାର ଦୀର୍ଘ ଦଶମାସର ସଂଯୋଗ ଏବେ କେବଳ ଏକ ଚିହ୍ନ।

କ୍ୱାରେନ୍‌ଟାଇନର ମିଆଦ ପୂରିଲେ ଏ ସଂତାନକୁ ବିଜ୍ଞାନୀମାନେ ତାଠୁଁ ଛଡ଼େଇ ନେବେ। ସଂତାନଟି, ବଡ଼ କାଚ ଘର- ଯାହାର ଇଂରାଜୀ ନାଁ ଜୁମ୍ବୋ ଇନକ୍ୟୁବେଟର-ମଧ୍ୟରେ ବିଜ୍ଞାନୀମାନଙ୍କ ତତ୍ତ୍ୱାବଧାନରେ ରହିବ। ସେଠି ତାର ବି.ଏମ.ଆର. ମପା ହେବ, ଇସିଜି. ଇଇଜି କେତେ କ'ଣ ପରୀକ୍ଷା ହେବ। ମହାକାଶରେ ଜନ୍ମ ହୋଇଥିବା ପ୍ରଥମ ମଣିଷ ସଂତାନ ଅନ୍ୟ ପାଞ୍ଚଟା ଛୁଆ ପରି ନା ଅନ୍ୟ ରକମର, ସେ ସମସ୍ତ ଦେଖା ସରିଲେ ତେବେ ଯାଇ ବିଜ୍ଞାନୀମାନେ ଅନ୍ୟ ଚିନ୍ତା କରିବେ।

ଯେଉଁଦିନ ମୋନିକା ଗର୍ଭବତୀ ହେବ, ସେଦିନ ଅପରେସନ୍ ଟେବୁଲ ଉପରେ ଶୋଇ ଡାକ୍ତରମାନଙ୍କ ଖଣ୍ଡ ଖଣ୍ଡ କଥାବାର୍ତ୍ତା ଶୁଣୁଥାଏ। ମୋନିକା ନିଜେ ଡାକ୍ତର ନୁହେଁ, ତେଣୁ ସେମାନଙ୍କ ସମସ୍ତ କଥା ବୁଝି ପାରୁନଥାଏ; ଜଣେ ଜୁନିୟର ସର୍ଜନ ପଚାରୁଥାନ୍ତି, ସାର, ମହାକାଶର ବିନା ମାଧ୍ୟାକର୍ଷଣରେ ଛୁଆଟି ଜନ୍ମ ହେବ କିପରି ?

ଆପ୍ରନର ବୋତାମ ଗୁଡ଼ାକ ଲଗଉ ଲଗଉ ପ୍ରଫେସର କହିଲେ, 'ମୋନିକା କ'ଣ ସବୁବେଳେ ମହାକାଶରେ ପହଁରୁଥିବ। ଲେବର ଆରମ୍ଭ ହେଲେ ସ୍ପେସ ଷ୍ଟେସନ ଭିତରକୁ ଚାଲି ଆସିବ। ସ୍ପେସ ଷ୍ଟେସନ ଭିତରେ କିଛିଟା କୃତ୍ରିମ ମାଧ୍ୟାକର୍ଷଣ ଓ ବାୟୁ ଚାପର ବ୍ୟବସ୍ଥା ରହିଛି।

ଆଉ ଜଣେ ପଚାରିଲେ, ମାଧ୍ୟାକର୍ଷଣର ଊଣା ହେତୁ ରକ୍ତର ଚାପ ଯଥେଷ୍ଟ କମ୍ ରହିବ। ସେଇ ସ୍ୱଳ୍ପ ଚାପରେ ମୋନିକାର ହୃଦୟ ଓ ଭ୍ରୃଣର ହୃଦୟ ଠିକ୍ ଭାବେ କାମ କରିବ ତ ?

ଉତ୍ତରରେ ପ୍ରଫେସର କହିଲେ, ମୋନିକାର ହୃଦ୍‌ସ୍ପନ୍ଦନ ନିଶ୍ଚିତ ରୂପେ ଶିଥିଳ ହେବ, କିନ୍ତୁ ଭୃଣର ହୃଦୟ କିପରି ଚାଲିବ ସେ କଥା ଏବେଠୁ କହି ହେବ ନାହିଁ।

ପ୍ରଥମ ଜଣ କହିଲେ, ସାର, ମହାକାଶରେ ଅଜଣା ରଶ୍ମିମାନଙ୍କ ତେଜସ୍କ୍ରିୟତା ପ୍ରଭାବରେ ଭୃଣର କୋଷମାନଙ୍କରେ ଯଥେଷ୍ଟ ମ୍ୟୁଟେସନ୍ ଦେଖାଦେବ। ଶରୀରରେ ଅଜଣା ପ୍ରୋଟିନ୍ ବି ତିଆରି ହୋଇପାରେ? ପ୍ରଫେସର ହସି କରି ମୁଣ୍ଡ ଟୁଙ୍ଗାରିଲେ। କହିଲେ, ସେଇ ପ୍ରଭାବ ଦେଖିବା ପାଇଁ ଏତେ ଅୟୋଜନ। ତେବେ ମହାକାଶ ପୋଷାକରେ ଥିଲେ ବା ସ୍ପେସ ଷ୍ଟେସନ ମଧ୍ୟରେ ରହିଲେ ଅଜଣା ରଶ୍ମିମାନଙ୍କ ପ୍ରଭାବ କମ୍ ପଡ଼ିବ। ଦେଖାଯାଉ କ'ଣ ହେଉଛି। କହି ପ୍ରଫେସର ଭୃଣ ସ୍ଥାପନରେ ମନୋନିବେଶ କଲେ।

କ୍ୱାରେନ୍‌ଟାଇନର ବନ୍ଦୀ କୋଠରୀରେ ମୋନିକାର ସମୟ ଆଉ କଟୁ ନ ଥାଏ, ଅଳସ ହାତରେ ପୃଥିବୀର ବିଭିନ୍ନ ପ୍ରାନ୍ତରରୁ ଆସିଥିବା ଶୁଭେଚ୍ଛା ପତ୍ରମାନ ଖେଳେଇ ଦେଖୁଥାଏ। ଜଣେ ଭାରତୀୟ ଶୁଭେଚ୍ଛୁ ତା ସଂତାନର ନାମଟିଏ ପଠେଇଛନ୍ତି। 'ଆକାଶ', ନାଁଟି ମୋନିକାର ବେଶ ପସନ୍ଦ ହୁଏ। ପାଖ ଖଟରେ ଶୋଇଥିବା ସଂତାନର ମୁହଁକୁ ଦେଖେ, କେତେ ଦିନ ହୋଇଗଲା ସେ ନୀଳ ଆକାଶ ଦେଖିନାହିଁ। ମହାକାଶରେ ନୀଳ ଆକାଶ ପାଇବ କେଉଁଠୁ? ଯୁଆଡ଼େ ଯେଣେ ଦେଖ କେବଳ ମାଛି ଅନ୍ଧାର।

କ୍ୱାରେନ୍‌ଟାଇନ୍‌ର ମିଆଦ ପୂରୁ ନ ପୂରୁଣୁ ବିଜ୍ଞାନୀମାନେ 'ଆକାଶ'କୁ ନେଇ ସେମାନଙ୍କ ପରୀକ୍ଷା ଆରମ୍ଭ କରିଦେଲେ। ସେ ସମସ୍ତ ପରୀକ୍ଷାର ଫଳ ଯେତେ ବାହାରୁଥାଏ ଆକାଶକୁ ନେଇ ବିଜ୍ଞାନୀମାନଙ୍କ ଚିନ୍ତା ସେତିକି ବଢୁଥାଏ; ସେମାନେ ଭାବିଥିଲେ ଜରାୟୁ ମଧ୍ୟରେ ସୁରକ୍ଷିତ ରହି ଭୃଣ ତାର ନିର୍ଦ୍ଦିଷ୍ଟ ଛନ୍ଦରେ ଅନ୍ୟ ପାଞ୍ଚଟା ଭୃଣ ପରି ବଢ଼ିବ, ମାତ୍ର ଏ ଛୁଆ ବାହାରକୁ ଆପାତ ସାଧାରଣ ଦେଖାଯାଉଥିଲେ ହେଁ ସାଧାରଣ ନୁହେଁ। ଏହାର ଗୋଡ଼ର ଗଠନ, ମୁଣ୍ଡର ଆକାର ଭିନ୍ନ। ଆରମ୍ଭ ହେଲା କେତୋଟି ନିୟମ ମାଫିକ ପରୀକ୍ଷା। ସେ ପରୀକ୍ଷାରେ ସେମାନେ କିଛି ତାରତମ୍ୟ ପାଇଲେ। ସେଇଠୁ 'ଆକାଶ' ଶରୀରରେ ହେଉଥିବା ବିଭିନ୍ନ ଜୈବିକ କ୍ରିୟା ଠିକ୍ ହେଉଛି କି ନାହିଁ ଦେଖିବା ପାଇଁ କେତୋଟି ନୂତନ ପରୀକ୍ଷା ଆରମ୍ଭ କଲେ। ବ୍ଲଡ଼ ସିରମ୍, ସେରିବ୍ରୋସ୍ପାଇନାଲ ଫ୍ଲୁଇଡ଼ ଆଦିର ଇଲେକ୍‌ଟ୍ରୋଫୋରେସିସ କରାଗଲା। ଜେଲ କଲମ୍ (Gel Column) ରେ ଦେଖାଗଲା କେତୋଟି ନୂଆ ବ୍ୟାଣ୍ଡ। ବିଜ୍ଞାନୀମାନେ ନିଶ୍ଚିତ ହେଲେ ଆକାଶ ଶରୀରରେ କେତୋଟି ନୂଆ ପ୍ରୋଟିନ୍ ତିଆରି ହେଉଛି। ଏହାର ଅର୍ଥ ସାଧାରଣ ମଣିଷଠି ଥିବା କେତୋଟି ସୁପ୍ତ 'ଜିନ' ଆକାଶଠି ଜାଗ୍ରତ ଓ କାର୍ଯ୍ୟକ୍ଷମ। ବିଜ୍ଞାନୀମାନଙ୍କ ବଳିରେଖା ଆହୁରି କୁଞ୍ଚିତ ହେଲା।

ସୃଷ୍ଟିରେ ମଣିଷ ଏପରି ଏକ ଜୀବ ଯାହାର ରହିଛି ଅପରିସୀମ କ୍ଷମତା। ଏହି କ୍ଷମତା ସେ ପାଇଥାଏ ଜନ୍ମସୂତ୍ରରେ ନିଜ ପିତାମାତାଙ୍କଠାରୁ 'ଜିନ' ଜରିଆରେ। 'ଜିନ' ତାକୁ ଦିଏ ଜୀବନକୁ ସୁଷ୍ଠୁ ଭାବେ ଚଳେଇବା ପାଇଁ ବିଭିନ୍ନ ଜୈବିକ ରସ ଓ ପ୍ରୋଟିନ୍ ଆଦି ତିଆରି କରିବାର ନକ୍ସା। ହେଲେ ଜୀବିତ କାଳରେ ମଣିଷର ସଂଚିତ ଥିବା ଜିନର ମାତ୍ର ପାଞ୍ଚ ଭାଗ ବ୍ୟବହାର କରିଥାଏ ବାକି ପଞ୍ଚାନବେ ଭାଗ ସୁରକ୍ଷିତ ହୋଇ ସୁପ୍ତ ରୁହେ। କାହିଁକି ସମସ୍ତ ଜିନ୍ କାର୍ଯ୍ୟକ୍ଷମ ହେଉନାହିଁ ତାର ସଠିକ ଉତ୍ତର ଏ ଯାଏ ଆମକୁ ଜଣା ନାହିଁ। ତେବେ ଅନେକେ ମଣନ୍ତି କେବେ ଯଦି ପ୍ରତିକୂଳ ପରିବେଶ ଆସେ ସେତେବେଳେ ଏହି ସମସ୍ତ ସୁପ୍ତ ଜିନ୍ କାର୍ଯ୍ୟକ୍ଷମ ହୋଇ ମଣିଷକୁ ପ୍ରତିକୂଳ ପରିବେଶ ସହ ଖାପ ଖୁଆଇବାରେ ସାହାଯ୍ୟ କରିବ, ଆକାଶର ସେରିବ୍ରୋସ୍ପାଇନାଲ ଫ୍ଲୁଇଡ୍ ବା ମସ୍ତିଷ୍କକ୍ଷରଣରେ ଯେଉଁ ନୂଆ ପ୍ରୋଟିନ ମାନ ଦେଖାଗଲା ତାହା ଆକାଶକୁ କି ନୂଆ କ୍ଷମତା ଦେବ ବନୁଅନିଷ୍ଟ କରିବ ଦେଖିବା ପାଇଁ ବିଜ୍ଞାନୀମାନେ ଅପେକ୍ଷା କଲେ।

ଆକାଶ ବଡ଼ ହୁଏ। ଶରୀରରେ ଦେଖାଦିଏ ପରିବର୍ତ୍ତନ। ବୟସ ଅନୁପାତରେ ଅନ୍ୟ ପାଞ୍ଚଟା ଛୁଆଠାରୁ ଆକାଶର ମୁଣ୍ଡ ଶରୀର ତୁଳନାରେ ବଡ଼। ସେଇ ମୁତାବକ ତାର ମସ୍ତିଷ୍କର ଆକାର। ମୁଣ୍ଡକୁ ଟେକି ଧରିବା ପାଇ ମୋଟ ବେକ। ବଡ଼ ଗୋଲ ଗୋଲ ଆଖି। ତହିଁରେ ହାଲୁକା ନୀଳ ରଙ୍ଗର ଡୋଳା। ଏହି ଆଖିର ଏକ ବଡ଼ କ୍ଷମତା ତାହା ପାଜା ଆଖି ପରି ବହୁ ଦୂରରେ ଥିବା ବସ୍ତୁକୁ ସ୍ପଷ୍ଟ ଦେଖିପାରେ। ଗ୍ରୀକ ଭାସ୍କର୍ଯ୍ୟ ଦ୍ୱାରା ଖୋଦିତ ହୋଇଥିବା ମୂର୍ତ୍ତିପରି ଆକାଶର ମାଂସପେଶୀ ଉନ୍ନତ ବଳିଷ୍ଠ ଓ ସୁସଂହତ। ଆକାଶ ଗୋଡ଼ର ମାଂସପେଶୀ ଏବଂ ହାଡ଼ ଓ ମାଂସପେଶୀକୁ ଯୋଗ କରୁଥିବା ଟେନ୍‌ଡନ୍, ଘୋଡା ପରି ସୁଦୃଢ଼ ଓ ସ୍ଥିତିସ୍ଥାପକ। ଏଥିପାଇଁ ଆକାଶ ଚାଲିଲେ ମନେ ହୁଏ ସେ ସତେ ଅବା ଦୌଡୁଛି। ସବୁଠାରୁ ବଡ଼ କଥା ଆକାଶ ଶରୀରର ରୋଗ ପ୍ରତିରୋଧ କ୍ଷମତା। ଶରୀରରେ ଥିବା ସଂବେଦନଶୀଳ ଇମ୍ୟୁନ୍‌ସିସ୍ଟମ ବଳରେ ସେ ବାହ୍ୟ ରୋଗ ଜୀବାଣୁର ଆକ୍ରମଣକୁ ସହଜରେ ପ୍ରତିରୋଧ କରିପାରେ।

ଆକାଶକୁ ନେଇ ପତ୍ରପତ୍ରିକା ମାନଙ୍କରେ ଯେତେ ନିବନ୍ଧ ଆଦି ପ୍ରକାଶିତ ହୁଏ, ସେ ସବୁ ପଢ଼ି ସାଧାରଣ ଲୋକ ଭାବନ୍ତି ହୁଏତ ଆକାଶ ଦାନବ ନଚେତ୍ କୌଣସି ଐଶୀ କ୍ଷମତା ସଂପନ୍ନ ମାନବ।

ସ୍କୁଲର ଶିକ୍ଷକ ମଜା କରିବା ପାଇଁ ଆକାଶକୁ କଠିନ ପ୍ରଶ୍ନ ପଚାରିଲେ ବା କଠିନ ଅଙ୍କ କଷିବାକୁ ଦେଲେ ଆକାଶ ସଂଗେ ସଂଗେ ସେମାନଙ୍କ ପ୍ରଶ୍ନର ଉତ୍ତର ଦିଏ, ଆଖିର ପିଛୁଳାକେ କଠିନ ଅଙ୍କ ସବୁ କଷିଦିଏ, ଦୌଡ଼କୁଦରେ ମଧ୍ୟ ଆକାଶ ସମସ୍ତଙ୍କ ଠାରୁ ଆଗରେ। ହେଲେ କ'ଣ

ହେବ ? ଖେଳକୁଦରେ ସମସ୍ତଙ୍କଠାରୁ ଭଲ ହୋଇ ମଧ୍ୟ ଆକାଶ ତାର ଉପଯୁକ୍ତ ସମ୍ମାନ ପାଏ ନାହିଁ। ସ୍କୁଲଟିମରେ ସେ ସ୍ଥାନ ପାଏ ନାହିଁ। କାରଣ ବିପକ୍ଷ ଦଳର ଖେଳାଳୀମାନେ ଅଭିଯୋଗ କରନ୍ତି 'ଆକାଶ' ସେମାନଙ୍କଠୁ ଭିନ୍ନ, ଭଲ ପାଠ ପଢ଼ି ଭଲ ଖେଳି ଆକାଶ ପାଏ ସାନ୍ତ୍ୱନା, ପୁରସ୍କାର। ଦେଖେ ଅନ୍ୟମାନଙ୍କ ଆଖିରେ ଅନୁଗ୍ରହର ଦୃଷ୍ଟି।

ଏମିତି ଶୁଣୁ ଶୁଣୁ ଦେଖୁ ଦେଖୁ ଆକାଶ ଅନୁଭବ କରେ ତାର ଜନ୍ମ ତାର ଗଠନ ଅନ୍ୟ ସାଧାରଣ ପରି ନୁହେଁ। ସେ ପୃଥିବୀକୁ ଏକ ନୂତନ ଆଗନ୍ତୁକ। ସଂପୂର୍ଣ୍ଣ ଏକା। ତାର କେହି ନାହାନ୍ତି, ଅନାହୂତ ହୋଇ ସେ ହଠାତ୍ ପୃଥିବୀକୁ ଆସିଛି। ଆକାଶ ଭାବେ ମଣିଷ ନ ହୋଇ ଯଦି ଅନ୍ୟ କୌଣସି ଜୀବ ହୋଇଥାନ୍ତା, ତେବେ ବୋଧହୁଏ ପ୍ରକୃତିର ଉଦ୍ଦେଶ୍ୟ ବୁଝିପାରନ୍ତା, ଯେମିତି ପଶୁପକ୍ଷୀ ପିମ୍ପୁଡ଼ି ବୁଝି ପାରନ୍ତି ଭବିଷ୍ୟତର ସଂକେତ।

ଆକାଶ ଭାବେ- ଏଇ ମଣିଷ ଜାତିଟା, ଯେଉଁମାନେ ତାକୁ ନେଇ ମଜା କରୁଛନ୍ତି, ସେମାନେ ଚାହାନ୍ତି ସବୁ କିଛି ତାଙ୍କ ମନ ମୁତାବକ ହେଉ। ନିଜର ସ୍ୱାର୍ଥପାଇଁ ଅନ୍ୟକୁ ଯୂପକାଠ ଉପରେ ଚଢ଼େଇବାକୁ ସେମାନେ ତିଳେ ହେଲେ ଦ୍ୱିଧା କରନ୍ତି ନାହିଁ। ଏପରି ଏକ ପରଶ୍ରୀକାତର ନୀଚମନା ସ୍ୱାର୍ଥପର ପ୍ରାଣୀ କାହିଁକି ଯେ ବଂଚିଛି। ସାଢ଼େ ତିନିହାତ ଜମି, ଦି ଓଳି ଦି ମୁଠା ଅନ୍ନ, ପିଠିକୁ ଖଣ୍ଡେ କନା ବଂଚିବା ପାଇଁ ଯେଉଁଠି ଯଥେଷ୍ଟ ସେଠି ମଣିଷ ଜୀବନଟାଯାକ କେବଳ 'ମୋର' 'ମୋର' ହୋଇ ସଂଚୟ କରିଯାଇଛି। ନିଜ ପାଇଁ, ନିଜ ପୁତ୍ର ପାଇଁ, ନିଜ ପ୍ରପୌତ୍ର ପାଇଁ। ମଣିଷକୁ ମାରି ମଣିଷ ଦେହରେ ବିଷ ଢାଳି ଏମାନେ କହନ୍ତି, ''ଆମେ ବିଷ' ପାଇଁ ଔଷଧ ଆବିଷ୍କାର କରୁଛୁ।'' କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପର ବନ୍ଦ କୋଠରୀରେ ବିଷାକ୍ତ ବାଷ୍ପ ଛାଡ଼ି ଦେଖନ୍ତି ମଣିଷ କିପରି କଲବଲ ହେଉଛି।

ମୋତେ କ'ଣ ଏମାନେ କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପରେ ରଖି ନାହାଁନ୍ତି। ମୋର ଅଙ୍ଗଭଙ୍ଗୀ ଚାଲିଚଳନ ଏପରି କି ମୋର ଚିନ୍ତା ଭାବନା ସବୁ ଏମାନଙ୍କ ପରୀକ୍ଷାର ଖୋରାକ। ସେଦିନ ମୋତେ ନେଇ ମୋର ବିଜ୍ଞାନୀ ଅଭିଭାବକ ମାନେ କଥା ହେଉଥାନ୍ତି। ମୁଁ ସେଠି ନଥାଏ, ହେଲେ ଇଣ୍ଟରକମ୍‌ଟା ଚାଲୁଥାଏ। ସେମାନଙ୍କ କଥା ଗୁଡ଼ାକ ମୋ କାନରେ ପଡ଼ିଲା। 'ବିଶ୍ୱାସ କରି ହୋଉ ନାହିଁ, ଆମେ ଏତେ ଶୀଘ୍ର 'ଜ୍ୟାକ୍‌ପଟ୍' (Jack Pot) ପାଇବୁ।'

ଅନ୍ୟ ଜଣ ହସି କହିଲେ, 'ଜ୍ୟାକ୍‌ପଟ କଣ ପାଇଲେଣି ?'
ପୂର୍ବଜଣ - 'ଆଜି ନ ହେଲେ କାଲି ମିଳିବ'
ଆପଣ ଶେ ପିଲାଟାର ଜେନିକ ମେକ ଅପ ଦେଖିଲେଣି -

'ହଁ, ତେବେ ଆପଣ ବହୁତ ଆଗକୁ ଚିନ୍ତା କରୁଛନ୍ତି, ନୂତନ ଜାଗ୍ରତ ଜିନ୍ ଗୁଡ଼ାକ ପରବର୍ତ୍ତି ପ୍ରଜନ୍ମକୁ ନ ଗଲା ଯାଏ —

ପ୍ରଥମ ଜଣ ହସିଲେ, କହିଲେ ନିଶ୍ଚୟ, ତେବେ ଏ ଯାଏ ସବୁକିଛି ଆମ ଇଚ୍ଛା ମୁତାବକ ହେଉଛି।

ପରଜଣ କହିଲେ, ମୁଁ ଭାବୁଛି ଏହାକୁ କିଏ ବିବାହ କରିବ?

ଆଉ ଶୁଣିବାକୁ ଆକାଶର ଧୈର୍ଯ୍ୟ ନ ଥାଏ। ଇଣ୍ଟରକମ୍‌ର ସୁଇଚ୍‌ଟାକୁ ଅଫ୍ କରିଦିଏ। ଭାବେ, 'ମୋ ଜନ୍ମ ମୋ ନିଜ ହାତରେ ନଥିଲା। କିନ୍ତୁ ମୋ ମା - ପୃଥିବୀରେ କ'ଣ ପ୍ରସୂତି ସଦନ ବା ସୂତିକାଗାରର ଅଭାବ ଥିଲା। ଏତେ ସ୍ଥାନ ଥାଉ ଥାଉ ମୋ ମା ମୋତେ ଜନ୍ମ ଦେଲା ମହାକାଶରେ। କ'ଣ ପାଇଁ? ପୃଥିବୀରେ ଜନ୍ମ ହୋଇଥିଲେ ଆଉ ପାଞ୍ଚଟା ରାମ ଶ୍ୟାମ ପରି ମୁଁ ମୋର ଜୀବଲୀଳା କରିଥାନ୍ତି। କିନ୍ତୁ ତାହା ହେବାର ନୁହେଁ।

ସେଦିନ ଚିଡ଼ିଆଖାନା ଯାଇଥାଏ। ଅଫ୍ରିକାର ଜଙ୍ଗଲରୁ ଆସିଥାଏ ଗରିଲାଟିଏ। ଅସହାୟ, ନିରିହ ଆଖିରେ ଜୁଳୁଜୁଳୁ କରି ଲୁହା ଗାରଦ ଆରପଟୁ ଅନେଇ ଥାଏ। ମୋ ବନ୍ଧୁମାନେ ତାକୁ ଖଣ୍ଡିଆ ସିଗାରେଟ୍ ଟିଏ ପିଇବାକୁ ଦେଲେ। ବିଚରା ଗରିଲା, ଆଫ୍ରିକାର ଜଂଗଲରେ ସିଗାରେଟ୍ କାହୁଁ ପାଇବ? ହେଲେ ମଣିଷର ଦେଖାଦେଖି ବଡ଼ ଦମ୍‌ଟିଏ ନେଲା। ସହି ପାରିଲା ନାହିଁ। କାଶି କାଶି ନୟାନ୍ତ ହେଲା, ସିଗାରେଟ ନିଆଁରେ ଚମର ଅଂଶ ପୋଡ଼ିଗଲା। ଗରିଲାଟିର ବେଦମ ହେବା ଦେଖି ମୋ ସାଙ୍ଗମାନେ ହସୁଥାନ୍ତି। ମଣିଷ ଗର୍ବରେ କୁହେ ସେ ପୃଥିବୀର ଏକମାତ୍ର ପ୍ରାଣୀ ଯିଏ ହସିପାରେ। ଏମାନେ ଅନ୍ୟର ଅସହାୟତାରେ ହସନ୍ତି। ଗର୍ବରେ ହସନ୍ତି। ତାଚ୍ଛଲ୍ୟରେ ହସନ୍ତି। ମୋତେ ନେଇ ଯେପରି ହସୁଛନ୍ତି।

ଦିନଯାଏ ପ୍ରକୃତିର ନିୟମରେ ଆକାଶ ଶରୀରର ବିଶେଷ ଗ୍ରନ୍ଥିମାନ ଗୋଟି ଗୋଟି ହୋଇ ସଚଳ ହୁଏ। ଆସେ ଯୌବନ। ବୟସ ହିସାବରେ ଅକାଶର ଅନ୍ୟ ସମବୟସ୍କ ବନ୍ଧୁମାନେ ଯେତେବେଳେ ପୌଢ଼, ସେତେବେଳେ ଆକାଶର ହୁଏ ଯୌବନର ଅଭିଷେକ। ଉପଲକ୍ଷ୍ୟ ମିଳିଲା। ନିଜ କରାମତିର ଚମକ ଦେଖେଇବା ଲାଗି ସେଦିନ ବିଜ୍ଞାନୀମାନେ ମହାକାଶରେ ଜାତ ପ୍ରଥମ ମାନବ ସନ୍ତାନ ଆଗମନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରୁଥାନ୍ତି। ନିମନ୍ତ୍ରିତ ଅତିଥିମାନଙ୍କ ସହ ମୋନିକା ଆସିଥାଏ ପୁଅକୁ ଶୁଭେଚ୍ଛା ଜଣେଇବା ପାଇଁ। ଦୂରରୁ ଆକାଶକୁ ଦେଖି ମୋନିକା ଚମକି ଉଠେ। ମା'ର ଆଖି ଖୋଳପା ଭିତରଟା ଦେଖିପାରେ। ବନ୍ଧୁମିଳନକୁ ଆସିଥାନ୍ତି ମାନବିକ ଅଧିକାର ସଂସ୍ଥାର ସମାଜ ବିଜ୍ଞାନୀ। ସେମାନେ ଆକାଶର ବିଜ୍ଞାନୀ ଅଭିଭାବକ ମାନଙ୍କୁ ପ୍ରଶ୍ନ କରନ୍ତି - ପଚାରନ୍ତି, 'ଆକାଶ କ'ଣ ଚିରଦିନ ବିଜ୍ଞାନୀମାନଙ୍କ ପରୀକ୍ଷାପାଇଁ

'ଗିନିପିଗ' ହୋଇ ରହିବ? ବିଜ୍ଞାନୀ ମାନଙ୍କ ପାଖରେ ସେ ପ୍ରଶ୍ନର ସଠିକ ଉତ୍ତର ନଥାଏ। ସେମାନେ ଆକାଶର ଜନ୍ମ ଓ ଶରୀରର ନୂତନ ଚରିତ୍ରମାନଙ୍କୁ ନେଇ ମଶଗୁଲ। ଆକାଶ ସେମାନଙ୍କ ପାଇଁ ପରୀକ୍ଷାର ନୂତନ ବାଟ ଖୋଲିଥିଲା।

ଧୀର ପାଦରେ ମୋନିକା ଆକାଶ ନିକଟକୁ ଯାଏ। ଗଲାବେଳେ ଏକ ଅଜଣା ଭୟ ତାକୁ ଯେପରି ମାଡ଼ି ପଡୁଥାଏ। ବହୁଦିନ ତଳେ ଯେତେବେଳେ ଆକାଶ ତା ପେଟରେ, ଏହି ପରି ଏକ ଅଜଣା ଭିତି ତାକୁ ପ୍ରାୟ ଘାରୁ ଥିଲା। କ'ଣ ହେବ? ତାର ସନ୍ତାନ କିପରି ହେବ? କଣ ତାର ଭବିଷ୍ୟତ? ଆଜି ଆକାଶକୁ ଦେଖି ମୋନିକାର ମନେ ହେଲା ଏ ସନ୍ତାନ ପାଇଁ ସେ ହିଁ କେବଳ ଦାୟୀ। ପୁଅକୁ କୁଣ୍ଢେଇ ମୋନିକାର ଆଖି ଛଳଛଳ ହୋଇ ଉଠେ। ଚିଡ଼ ଚିଡ଼ ହୋଇ ମୋନିକା, ଆକାଶକୁ କିଛି କହିବାକୁ ଚେଷ୍ଟା କରେ। ଓଠ ଥରେ ହେଲେ କଥା ବାହାରେ ନାହିଁ। ଝାପସା ଆଖିରେ ମୋନିକା ଆକାଶକୁ ଦେଖେ। ନୀଳଆକାଶ ପରିବର୍ତ୍ତେ ସେ ଦେଖେ ମହାକାଶର ଅନ୍ତହୀନ ଅନ୍ଧାର।



# ଅବାଞ୍ଛିତ : ୧

ପରମପିତାଙ୍କ ନିର୍ଦ୍ଦେଶ ପୁଣି ପୃଥିବୀକୁ ଯିବାକୁ ହେବ। ପୃଥିବୀ ସମୟ ହିସାବରେ ମୋର ଏଠାକୁ ଆସିବାର ଷାଠିଏ ବର୍ଷ ହେଲାଣି। ସାଧାରଣତ ଏତେ ଶୀଘ୍ର ପୁଣି ପୃଥିବୀକୁ ଫେରିଯିବାର ଆଦେଶ ପରମପିତା ଦଅନ୍ତି ନାହିଁ। ତେବେ ତାଙ୍କର ଇଚ୍ଛା ବୁଝିବାର କ୍ଷମତା ମୋର ନାହିଁ। ଶେଷ ଥର ଯେବେ ପୃଥିବୀ ଛାଡ଼ି ଆସିଥିଲି ସମୟଟା ଥିଲା ବିଂଶ ଶତାବ୍ଦୀର ଶେଷ। ଏକବିଂଶ ଶତାବ୍ଦୀର ଆଗମନ ନେଇ ମଣିଷ ଉନ୍ମୁଖ ଥାଏ। ମଣିଷ ପାଖରେ ସେତେବେଳେ ପାର୍ଥୀବ ଭୋଗ୍ୟର ତାଲିକା ଅପୂରନ୍ତ। ଭୋଗର ଜ୍ୱାଳାରେ ତାର ଅସିଇଚ୍ଛା ବଢୁଥାଏ। ତା'ପରେ ଦିନେ ମୋର ଡାକରା ପଡ଼ିଲା ମୁଁ ଚାଲି ଆସିଲି।

ଗୋଟିଏ ପରେ ଗୋଟିଏ ସ୍ତର ପାର ହୋଇ ସେ ଓହ୍ଲଉଥାନ୍ତି। ପୃଥିବୀ ବାୟୁମଣ୍ଡଳରେ ପହଞ୍ଚିବା ପରେ ତାଙ୍କର ଗତି ମନ୍ଥର ହେଲା। ନୀଳବର୍ଣ୍ଣ ଗ୍ରହଟିର ଶାଗୁଆ ପଣତ ଦେଖି ତାଙ୍କର ଅବତରଣ ଜନିତ ବିଷାଦ ଭାବ ଧୀରେ ଧୀରେ ଅପସରି ଗଲା। ଆସିଲାବେଳେ ପରମପିତାଙ୍କୁ ସେ ଅନେକ ଅନୁନୟ କରିଥିଲେ ଆଦେଶ ପ୍ରତ୍ୟାହାର ପାଇଁ। ସସ୍ନେହରେ ପରମପିତା କହିଥିଲେ 'ଶୀଘ୍ର ଫେରିଆସିବ'। ପୃଥିବୀ ପୃଷ୍ଠରେ ଓହ୍ଲେଇ ତାଙ୍କର ପରମପିତାଙ୍କ ସହ ଅବସ୍ଥାନର ସ୍ମୃତି କ୍ରମେ କ୍ଷୀଣ ହେବାକୁ ଲାଗିଲା, ପୂର୍ବ ଜନ୍ମର କିଛି ସ୍ମୃତି ମନେ ପଡ଼ିଲା। ଏବେ ତାଙ୍କର କାମ ଏକ ଗର୍ଭଗୃହର ସନ୍ଧାନ ଯେଉଁଠି ସେ ରକ୍ତ ମେଦ ଅସ୍ଥି ମଜ୍ଜା ମଧ୍ୟରେ ତିଳତିଳ ହୋଇ ବଡ଼ ହେବେ। କର୍ମଫଳ, ସଂସ୍କାର ଆଦି ନେଇ ଗର୍ଭଗୃହର ନିର୍ଦ୍ଧାରଣ ପୃଥିବୀ ଆସିବା ପୂର୍ବରୁ ହୋଇଥାଏ। ମାତ୍ର ଏଥର ପରମପିତା ତାଙ୍କୁ ଏକ ସୁଯୋଗ ଦେଇଛନ୍ତି। ଯେଉଁ ଗର୍ଭଗୃହରେ ସେ ଦଶମାସ ଅବସ୍ଥାନ କରିବେ, ତାହା ସେ ନିଜେ ନିର୍ଦ୍ଧାରଣ କରିପାରିବେ।

ବର୍ଷଣ ସିକ୍ତ ପୃଥିବୀରେ ଏବେ ରାତ୍ରି। ଆର୍ଦ୍ର ଥଣ୍ଡା ପବନ ବୋହୁଛି। ଆକାଶରେ ଘନ ବାଦଲ। ଯେକୌଣସି ମୁହୂର୍ତ୍ତରେ ବର୍ଷା ହୋଇପାରେ - ଏହିଭଳି ରାତ୍ରିରେ ନାରୀ ଗର୍ଭବତୀ ହୁଏ। ସେ ତାଙ୍କର ଅବୟବହୀନ ଶରୀରରେ ଚୁପ୍‌ଚାପ୍ ଠିଆ ହୋଇ ଚାରିଆଡ଼କୁ ପର୍ଯ୍ୟବେକ୍ଷଣ କଲେ ପୂର୍ବ ଅଭିଜ୍ଞତାର ସ୍ମୃତି ତାଙ୍କ ମନ ସ୍ଥିର କରିବାକୁ ଦେଉ ନଥାଏ। ସେ ଜାଣନ୍ତି ଗର୍ଭସଂଚାର ଓ ଗର୍ଭଧାରଣରେ ସବୁ ମଣିଷ ଏକ ଅନ୍ୟ ପରି ହେଲେହେଁ ସବୁ ମଣିଷ ଏକ ନୁହନ୍ତି। ତାଙ୍କ ଭିତରେ ପ୍ରଧାନ ଅନ୍ତରାୟ ବିତ୍ତ। ବିତ୍ତ ନେଇ ସେମାନଙ୍କ ମଧ୍ୟରେ କେତେ ବିଭାଗ - ଉଚ୍ଚ ବିତ୍ତ, ମଧ୍ୟବିତ୍ତ, ନିମ୍ନବିତ୍ତ, ନିମ୍ନ ନିମ୍ନ ବିତ୍ତ। ଉଚ୍ଚବିତ୍ତ ମେସିନ ଚାଳିତ ଥଣ୍ଡା ଘରେ କମ୍ବଳ ଘୋଡ଼ି ହୋଇ ଟିକିଏ ନିଦ ପାଇଁ ଛଟପଟ କରେ, ନିମ୍ନ ବିତ୍ତ ଖୋଲା ଆକାଶ ତଳେ ଇଟା ଖଣ୍ଡେ ମୁଣ୍ଡ ତଳେ ଥୋଇ ନିଶ୍ଚିନ୍ତରେ ଘୁଂଘୁଡ଼ି ମାରେ। ଆଉ ମଧ୍ୟବିତ୍ତ ଚେଇଁ ଚେଇଁ ଉଚ୍ଚବିତ୍ତର ସ୍ୱପ୍ନ ଦେଖେ।

ହାତରେ ସମୟ ଗୋଟିଏ ମାତ୍ର ରାତ୍ରି। ସେ କାଳକ୍ଷେପ ନ କରି ଏକ ସୁଦୃଶ୍ୟ ଅଟ୍ଟାଳିକାର ଶୋଇବା ଘରେ ପ୍ରବେଶ କଲେ। ଦେଖିଲେ ଦୁଇଟି ନାରୀ-ପୁରୁଷ ଖଟର ଦୁଇ କଡ଼ରେ ଶୋଇଛନ୍ତି। ବାୟବୀୟ ଅବସ୍ଥା ଥିବାରେ ସେମାନଙ୍କ ମନ କଥା ଜାଣିବାରେ ତାଙ୍କର ଅସୁବିଧା ହେଲାନାହିଁ। ସେ ଅନୁଭବ କଲେ ସଂସାରର ପ୍ରୟୋଜନରେ ଏହି ଦୁଇଟି ପ୍ରାଣୀ ପରସ୍ପରର ଅତି ନିକଟରେ ବାସ କରୁଛନ୍ତି, ହେଲେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମହାଦେଶର ବ୍ୟବଧାନ। ଘର ପାଇଁ ସେମାନଙ୍କଠି ବିଭବର ଅଭାବ ନାହିଁ। ଅଭାବ କେବଳ ଏକ ସଂନ୍ତାନର। ସନ୍ତାନର ଆଗମନ ନେଇ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମତାନ୍ତର। ସ୍ତ୍ରୀଟି ଅତ୍ୟାଧୁନିକା, ବିଶ୍ୱାସ କରନ୍ତି ଜରାୟୁ ସ୍ୱାଧୀନତାରେ। ତାଙ୍କର ଇଚ୍ଛା ARTS (Assisted Reproductive Technologies) Centre ରେ ଶୁକ୍ରାଣୁର ଇଚ୍ଛା ମୁତାବକ ପରିବର୍ତ୍ତନ କରାଇ ବରାଦ ମୁତାବକ ସଂନ୍ତାନଟିଏ, ଯାହାର ପ୍ରାଥମିକ ବୃଦ୍ଧି ହେବ ଧାତ୍ରୀମାତାର ଗର୍ଭରେ। ସ୍ୱାମୀଟି ପ୍ରାଚୀନପନ୍ଥୀ। ସେ ସନାତନ ପଦ୍ଧତିରେ ପିତା ହେବାକୁ ଇଚ୍ଛୁକ। ଶେଷରେ ସ୍ୱାମୀ, ସ୍ତ୍ରୀର ଇଚ୍ଛାକୁ ସମ୍ମାନ ଜଣାଇ ARTS Centre ଯିବା ପାଇଁ ରାଜି ହୋଇଛନ୍ତି ଓ ଧାତ୍ରୀମାତାର ସନ୍ଧାନ କରିଛନ୍ତି। ସେମାନେ ଆଗାମୀ କାଲି ଯିବେ ARTS Centre କୁ।

ପ୍ରଥମ ଘରେ ସ୍ଥାନ ନ ପାଇ ସେ ଗଲେ ଏକ ନିମ୍ନ ବିତ୍ତର ଘରକୁ। ପୂର୍ବ ଅଭିଜ୍ଞତାରୁ ସେ ଜାଣିଥିଲେ, ସନ୍ତାନ ପାଇଁ ନିମ୍ନବିତ୍ତଙ୍କ ଘରେ ପରିଶ୍ରମ କରିବାକୁ ହୁଏ ନାହିଁ। ସନ୍ତାନ ସେଠାରେ ଆପେ ଆପେ ଆସେ। ଏଥର ତାଙ୍କର ଏକ ନୂତନ ଅଭିଜ୍ଞତା ହେଲା। ସ୍ତ୍ରୀଟି ସ୍ୱାମୀର ସନ୍ତାନ ଧାରଣ ପାଇଁ ପ୍ରସ୍ତୁତ ନୁହେଁ। ସ୍ତ୍ରୀଟି ଆଗାମୀ କାଲି ଯିବ ARTS Centre କୁ

ଗର୍ଭଧାରଣ ପାଇଁ। ପ୍ରଥମେ ସେ ବୁଝିପାରିଲେ ନାହିଁ, ସ୍ୱାମୀ ଥାଉ ଥାଉ ARTS Centre ର ଆବଶ୍ୟକତା କଣ ? ପରେ ସେମାନଙ୍କ କଥାବାର୍ତ୍ତାରୁ ବୁଝିଲେ ସ୍ତ୍ରୀର ଇଚ୍ଛା ବୟସ ଥାଉ ଥାଉ ଦୁଇ ତିନିଥର ଧାତ୍ରୀମାତା ହୋଇପାରିଲେ ସେଥିରୁ ଯାହା ବିତ୍ତ ମିଳିବ ସେଥିରେ ତାଙ୍କ ପରିବାରର ଛୋଟ ଛୋଟ ଅଭାବ ଅନଟନ ଗୁଡ଼ିକ ଦୂର ହୋଇଯିବ।

ଦ୍ୱିତୀୟ ଥର ଅକୃତକାର୍ଯ୍ୟ ହୋଇ ସେ ଆଉ କେତୋଟି ସ୍ଥାନକୁ ଗଲେ। ନାରୀ ପୁରୁଷର ଏକତ୍ର ରହିବାର ଦେଖିଲେ, ସେମାନଙ୍କ ସେ ରହଣୀ Living together। ସେମାନେ ବିବାହକୁ ବିଶ୍ୱାସ କରନ୍ତି ନାହିଁ। ସେମାନଙ୍କ ମଧ୍ୟରେ ଘନିଷ୍ଠତା ରହିଛି ମାତ୍ର ସନ୍ତାନର ପ୍ରୟୋଜନ ନାହିଁ।

ଏଥର ସେ ଅସହାୟ ବୋଧ କଲେ। ଭାବିଲେ, ମୁଁ ଏ କେଉଁ ଜଗତକୁ ଆସିଲି। ଏକ ନାରୀକୁ ଜନନୀର ସମ୍ମାନ ଦେବାର ଅଧିକାର ପରମପିତା ମୋତେ ଦେଇଛନ୍ତି। ମାତ୍ର ନାରୀ ମାତା ହେବାକୁ ପ୍ରସ୍ତୁତ ନୁହନ୍ତି। ତେବେ କଣ ଆଉ କେତେଟା ଦିନରେ ଜନନୀ ଶବ୍ଦଟି ପୃଥିବୀରୁ ଲୋପ ପାଇଯିବ!

ସକାଳ ହେଲା। ଡେରି ନ କରି ସେ ପହଞ୍ଚିଲେ ARTS Centre ଠି। ପିତାମାତାଙ୍କୁ ଇଚ୍ଛା ମୁତାବକ ସନ୍ତାନ ଯୋଗେଇବା ଏଠାକାର ଡାକ୍ତର, ବୈଜ୍ଞାନିକମାନଙ୍କ କାମ। ସେ ଦେଖିଲେ ବିଭିନ୍ନ କୋଠରୀ- ସେଥିରେ ମରା ହୋଇଛି ଭିନ୍ନ ଭିନ୍ନ ଲେଖା ଥିବା ବୋର୍ଡ- In-vitro fertilisation, Sperm *Separtion and micro manipulation, cloned embryo, Implantation.* ଏହିପରି କେତେ କଣ। କିଛି ସମୟ ଅଭ୍ୟର୍ଥନାକାରୀଙ୍କଠି ଅପେକ୍ଷା କରୁକରୁ ସେ ଦେଖିଲେ ପୂର୍ବ ରାତ୍ରିର ଉଚ୍ଚବିତ୍ତ ସ୍ୱାମୀ ସ୍ତ୍ରୀ ଓ ସେମାନଙ୍କ ପଛରେ ନିମ୍ନ ବିତ୍ତର ସେ ସ୍ତ୍ରୀଟି ଆସୁଛନ୍ତି।

ପୁରୁଷଟି ଅଭ୍ୟର୍ଥନାକାରୀଙ୍କ ଠାରୁ ଲେଖା ନେଇ ଗଲେ Sperm micromanipulation କୋଠରୀକୁ ସେଠାରେ ନିଜ ଶୁକ୍ରାଣୁ ଦେଇ ସ୍ତ୍ରୀର ଇଚ୍ଛାମୁତାବକ ବରାଦ ଦେଲେ ଏକ ସଂନ୍ତାନ ଯାହାର ଉଚ୍ଚତା ଛଅ ଫୁଟ, ରଙ୍ଗ ଉଜ୍ଜ୍ୱଳ ଶ୍ୟାମ, ମୁଣ୍ଡରେ କୁଞ୍ଚ କୁଞ୍ଚ କେଶ, ପେଶା-ଟେନିସ ଖେଳାଳୀ। ଇତିମଧ୍ୟରେ ତାଙ୍କ ସ୍ତ୍ରୀ ଡିମ୍ବାଣୁ ସଂରକ୍ଷିତ କରି ବାହାରେ ବୁଲୁଥାନ୍ତି। କିଛି ସମୟ ପରେ ସ୍ୱାମୀଟି ସ୍ତ୍ରୀ ନିକଟକୁ ଆସି କହିଲେ, ''ତୁମର ପରିଶ୍ରମ ଆଉଟିକେ ଲାଘବ କରିଦେଲି। ଏକ କ୍ଲୋନର ବ୍ୟବସ୍ଥା କରି ଦେଲି। ସେଥିପାଇଁ ଟିକେ ବେଶୀ ଖର୍ଚ୍ଚ ପଡ଼ିଲା କଣ ଆଉ କରିବା -। ତୁମେ ତ ଆଉ ବାରମ୍ବାର ତୁମର ମୂଲ୍ୟବାନ ଡିମ୍ବାଣୁ ଦେବ ନାହିଁ।''

ଏଥର ସେ ଧାତ୍ରୀମାତା ପଛେ ପଛେ ଗଲେ IVF (In-vitro fertilisation and implantation) କ୍ୟାବିନକୁ ଏହି କୋଠରୀରେ କାଚତାଟିଆ ମଧ୍ୟରେ ଶୁକ୍ରାଣୁ

ଓ ଡିମ୍ବାଣୁର ମିଳନ ହୁଏ। ସେ ଅପେକ୍ଷା କଲେ –। ତା'ପରେ ପୂର୍ବୋକ୍ତ ପୁରୁଷର ଶୁକ୍ରାଣୁ ଯେବେ ସ୍ତ୍ରୀର ଡିମ୍ବାଣୁକୁ ନିଷିକ୍ତ କଲା, ସେ ସଙ୍ଗେ ସଙ୍ଗେ ଯୁଗ୍ମଜ (zygote) ମଧ୍ୟରେ ଆଶ୍ରୟ ନେଲେ। ଏଥର ନିଶ୍ଚିନ୍ତ ହୋଇ ସେ ଭାବିଲେ ଯାହାହେଉ ଆଶ୍ରୟ ମିଳିଗଲା।

ସତ୍ତା ଆଶ୍ରୟ ନେଲେ ହିଁ ଯୁଗ୍ମଜର ବିଭାଜନ ଓ ବୃଦ୍ଧି ହୁଏ। ସେ ଯେତେବେଳେ ଦୁଇକୋଷ ବିଶିଷ୍ଟ ବିଜ୍ଞାନୀମାନେ କୋଷ ଦୁଇଟିକୁ ଅଲଗା କରିନେଲେ– ଯେଉଁ କର୍ମଫଳ ଓ ସଂସ୍କାର ନେଇ ସେ ଆସିଥିଲେ ତାହା ଦ୍ୱିଖଣ୍ଡିତ ହେଲା। ବିଜ୍ଞାନୀମାନେ ଗୋଟିଏ କୋଷକୁ ସ୍ଥାପନ କଲେ ଧାତ୍ରୀମାତାର ଜରାୟୁରେ ଓ ଅନ୍ୟଟିକୁ ରଖିଲେ ଏକ ଇନ୍‌କ୍ୟୁବେଟର ମଧ୍ୟରେ।

ଜରାୟୁ ମଧ୍ୟରେ ତାଙ୍କର କେବଳ ମନେ ହେଲା। ତାଙ୍କର ଆଗମନ ଅବାଞ୍ଛିତ। ପ୍ରତ୍ୟେକେ କେବଳ ନିଜର ସ୍ୱାର୍ଥ ପାଇଁ ତାଙ୍କୁ ବଞ୍ଚେଇ ରଖିଛନ୍ତି। ପିତାମାତା, ଧାତ୍ରୀମାତା, ବିଜ୍ଞାନୀ ସମସ୍ତଙ୍କ ପାଇଁ ସେ ଏକ ପଣ୍ୟ ବିଶେଷ। ସେ ଯେତେବେଳେ ଭୂମିଷ୍ଠ ହେବେ ଶଙ୍ଖ ବାଜିବ ନାହିଁ ମାତା ଆଖିରୁ ଆନନ୍ଦାଶ୍ରୁ ବୋହିବ ନାହିଁ। ମାତା ସହ ଯଦି ନାଡ଼ିର ଯୋଗ ନ ରହିଲା ତେବେ ?

ସେ ପରମପିତାଙ୍କୁ ସ୍ମରଣ କଲେ।

ତା'ପରେ ଦିନେ ଅନୁଭବ କଲେ ଜରାୟୁଟିର ଅସ୍ୱାଭାବିକ ସଂକୋଚନ ଓ ପ୍ରସାରଣ ହେଉଛି। ମେଞ୍ଚେ ରକ୍ତ ସହ ସେ ଅବସ୍ଥାନ କରୁଥିବା ଭ୍ରୂଣଟିର ପତନ ହେଲା। ସେ ମୁକ୍ତ ହେଲେ। ପରମପିତା ତାଙ୍କର କଥା ରଖିଲେ। ଅବାଞ୍ଛିତ ଜନ୍ମରୁ ସେ ରକ୍ଷା ପାଇଲେ ହେଲେ ତାଙ୍କର କ୍ଲୋନଟି ତ ରହିଗଲା ବିଜ୍ଞାନୀମାନଙ୍କ କବଳରେ। ସତରେ କଣ ସେ ମୁକ୍ତି ପାଇଲେ ?



# ଅବାଞ୍ଛିତ : ୨

କ୍ଲୋନଟିର (clone) ଦାବୀ ନେଇ ART (assisted reproductive technologies) ସେଣ୍ଟରକୁ କେହି ଆସିଲେ ନାହିଁ। ବେଓ୍ୱାରିସ କ୍ଲୋନ ଭାବରେ ତାକୁ ନଷ୍ଟ କରି ଦେଇଥିଲେ କାମ ସରନ୍ତା। ମାତ୍ର କ୍ଲୋନଟି ମାଇକ୍ରୋମ୍ୟାନୁପୁଲେସନ ପଦ୍ଧତିରେ ହୋଇଥିଲା। ବିଜ୍ଞାନୀମାନେ ଅନେଇ ଥିଲେ ତା ଭିତରେ ଖଞ୍ଜା ହୋଇଥିବା ବିଶେଷ ଗୁଣ ମାନ ପ୍ରକାଶ ପାଉଛି କି ନାହିଁ, ସେମାନେ ଅପେକ୍ଷା କରିଥିଲେ ଏକ ଗର୍ଭଗୃହକୁ ଯେଉଁଠାରେ କ୍ଲୋନଟିର ଉପଯୁକ୍ତ ବୃଦ୍ଧି ହେବ।

ସେଦିନ (ART) ସେଣ୍ଟରରୁ ପୃଥିବୀର ବିଭିନ୍ନ ଖବର କାଗଜମାନଙ୍କୁ ଏକ ବିଜ୍ଞାପନ ଗଲା। ଶୀତଳୀକୃତ କ୍ଲୋନଟିର ବୟସ ତାର ବିଭିନ୍ନ ଗୁଣର ତାଲିକା ଏବଂ କ୍ଲୋନ ମଧ୍ୟରେ ଥିବା ଟେନିସ ଖେଳାଳୀ ହେବାର ସମ୍ଭାବନାକୁ ସେଇ ବିଜ୍ଞାପନରେ ବଡ଼ ହରଫରେ ଛପା ହେଲା। ଏଇ ଧରଣର ବିଜ୍ଞାପନ ଆର୍ଟ ସେଣ୍ଟରରୁ ପ୍ରାୟତଃ ଦିଆଯାଇଥାଏ। ମାତ୍ର କ୍ଲୋନ ବା ଭ୍ରୂଣ ଗ୍ରହଣ କରିବାକୁ କଦାଚିତ୍ କେହି ଆଗେଇ ଆସନ୍ତି। ସମାଜ ଯେଉଁ ଭାବେ ଆତ୍ମକୈନ୍ଦ୍ରିକ ହୋଇଯାଇଛି ଏ କେହି କାହାର ଦାୟିତ୍ୱ ନେବାକୁ ପ୍ରସ୍ତୁତ ନୁହଁନ୍ତି। ଯେଉଁଠି ପିତାମାତା ସନ୍ତାନର ଦାୟିତ୍ୱ ବୋର୍ଡିଂସ୍କୁଲ ଉପରେ ଛାଡ଼ି ଦେଇଛି, ସେଠି ଆଉ କି ଦାୟିତ୍ୱ ରହିଲା। ସ୍ୱାମୀ ସ୍ତ୍ରୀ ଯେ ଯାହା ହାତରେ ଚଉଦ ପା। ସେମାନେ ଏକାଠି ରହନ୍ତି ଦୁଇଟି ସମାନ୍ତରାଳ ରେଖା ପରି। ଜରାୟୁ ସ୍ୱାଧୀନତାର ବିଜୟ ପତାକା ଯେବେଠୁ ଉଡ଼ିଲାଣି ସ୍ତ୍ରୀ, ମା ହେବ କି ନାହିଁ, ସେଥିରେ ସ୍ୱାମୀ, ପରିବାର ବା ସମାଜର କହିବାର କିଛି ନାହିଁ। ଦିନ ଥିଲା ନାରୀ ସନ୍ତାନଧାରଣ କରି ପରିବାର ଏବଂ ସମାଜରେ ଗୌରବାନ୍ୱିତ ହେଉଥିଲା। ମା'ର ଆସନ ଥିଲା ସମାଜରେ ସବୁଠାରୁ ଉଚ୍ଚରେ, ଏବେ ନାରୀ ମନେକରେ ସଂତାନ ଧାରଣ ଅର୍ଥ ସମୟ ଓ ସ୍ୱାସ୍ଥ୍ୟ ନଷ୍ଟ। ସଂତାନ ଲାଳନ ଏକ

ଧରଣର ବିଳାସିତା ତେଣୁ ଆର୍ଟ ସେଣ୍ଟରମାନଙ୍କ ବେଓ୍ୱାରିସ ଭ୍ରୁଣ ଧାରଣ ପାଇଁ କିଏ କାହିଁକି ଆଗଭର ହେବ?

ତେବେ ଉପରୋକ୍ତ ବିଜ୍ଞାପନ ଉତ୍ତରରେ ଆର୍ଟ ସେଣ୍ଟର ଡାଇରେକ୍ଟରଙ୍କ ପାଖକୁ ଦୁଇଟି ଚିଠି ଆସିଲା। ବିଜ୍ଞାନୀମାନେ କିଛିଟା ଆଶ୍ୱସ୍ତ ହେଲେ। ଅନେକ ଆଶା ନେଇ କନଫରେନ୍ସ ହଲରେ ସମସ୍ତଙ୍କ ଗହଣରେ ଆର୍ଟସେଣ୍ଟର ଡାଇରେକ୍ଟର ଚିଠି ଦୁଇଟିକୁ ଖୋଲିଲେ।

ପ୍ରଥମ ଚିଠିଟି ଦେଇଛନ୍ତି ଏକ ପ୍ରବୀଣ ଦମ୍ପତି। ଦୀର୍ଘ ପଚିଶ ବର୍ଷ ପରସ୍ପର ପାଖାପାଖି ରହିଲା ପରେ ଏବେ ଦୁହେଁ କ୍ଲାନ୍ତ। ସେମାନେ ଜୀବନରେ କିଛି ନୂତନତ୍ୱ ଚାହାନ୍ତି। ପ୍ରୟୋଜନ ଏକ ସଂତାନ। ପ୍ରାକୃତିକ ନିୟମରେ ଦୁହେଁ ସଂତାନ ଉତ୍ପାଦନରେ ସକ୍ଷମ। ମାତ୍ର ସେମାନଙ୍କ ଆଶଙ୍କା ପ୍ରବୀଣ ବୟସରେ ସଂତାନର ଯଦି କୌଣସି ବଂଶଗତ ଅକ୍ଷମତା ପ୍ରକାଶ ପାଏ। ତେଣୁ ଅନିଶ୍ଚିତତା ଭିତରକୁ ନଯାଇ ଏକ ନିଶ୍ଚିତ କ୍ଲୋନକୁ ଗ୍ରହଣ କରିବା ପାଇଁ ସେମାନେ ମନସ୍ଥ କରିଛନ୍ତି। ଚିଠିଟି ପଢ଼ିସାରି ଡାଇରେକ୍ଟର ଅନ୍ୟ ବିଜ୍ଞାନୀମାନଙ୍କ ମୁହଁକୁ ଅନେଇଲେ। ଉତ୍ତରରେ କେତେଜଣ ନାସ୍ତିବାଚକ ମୁଣ୍ଡ ଟୁଙ୍ଗାରିଲେ। ସେମାନେ ଯୁକ୍ତି ବାଢ଼ିଲେ ପ୍ରବୀଣ ବୟସରେ ସ୍ତ୍ରୀଟି ଭ୍ରୁଣ ଧାରଣ କଲେ ତାର ପତନର ସମ୍ଭାବନା ଅଧିକ।

ଡାଇରେକ୍ଟର ଦ୍ୱିତୀୟ ଚିଠିଟି ପଢ଼ିଲେ। ଚିଠିଟି ପଠେଇଛନ୍ତି ଏକ ପ୍ରାକ୍ତନ ଟେନିସ ଖେଳାଳୀ। ଟିନା ନାଁରେ ଯିଏ ବିଖ୍ୟାତ। ଦୁଇ ଥର ଗ୍ରାଣ୍ଡସ୍ଲାମ ପରେ ଏକ ଦୁର୍ଘଟଣା ଯୋଗୁ ଟିନା ବାଧ୍ୟ ହୋଇ ଟେନିସ୍ ଖେଳରୁ ଅବସର ନେଇଛନ୍ତି। ମାତା ହେବାରେ ଟିନାଙ୍କର କୌଣସି ଶାରୀରିକ ବାଧା ନାହିଁ। ମାତ୍ର ଟିନା କୁମାରୀ। ସମାଜରେ ଏବେ କୁମାରୀ ମାତାମାନେ ସ୍ୱୀକୃତି ପାଇଲେଣି। ତଥାପି କେତେକ ପ୍ରାଚୀନପନ୍ଥି ବିଜ୍ଞାନୀମାନଙ୍କ ଏ ଧରଣର, ପରୀକ୍ଷା ନେଇ ଭ୍ରୁକୁଞ୍ଚନ କରୁଛନ୍ତି। ଟିନା ଏହି ଭ୍ରୁଣଟି ପାଇଁ ଆଗଭର ହେଲେ ଏବଂ ବିଜ୍ଞାନୀମାନେ ସେମାନଙ୍କ ପରୀକ୍ଷା କେତେଦୂର ସଫଳ ହେଉଛି ଦେଖିବା ପାଇଁ ଟିନାକୁ ହିଁ ବାଛିଲେ। ସେମାନଙ୍କ ବିଶ୍ୱାସ ଟିନାଙ୍କ ଜରାୟୁ ହିଁ ହେବ ଏହି ଆଶ୍ଚର୍ଯ୍ୟ କ୍ଲୋନ ପାଇଁ ସବୁଠାରୁ ସୁନ୍ଦର ଗର୍ଭଗୃହ।

ନିର୍ଦ୍ଦିଷ୍ଟ ଦିନରେ ଟିନାଙ୍କ ଜରାୟୁରେ କ୍ଲୋନଟିର ସ୍ଥାପନ ହେଲା। ଶୀତଳ ପରିବେଶରୁ ବାହାରି ଏକ ଅନୁକୂଳ ପରିବେଶରେ କ୍ଲୋନଟିର ଉତ୍ତୋରତ୍ତର ବୃଦ୍ଧି ହେଲା। ଦିନେ ଟିନା ଅନୁଭବ କଲେ ଭ୍ରୁଣଟି ବୁଲୁଛି। ଟିନା ଦିନ ଗଣିବାକୁ ଲାଗିଲେ। ସ୍ଫିତ ଉଦର ଉପରେ ହାତ ବୁଲଉ ବୁଲଉ ସେ ଆସୁଥିବା ସଂତାନର ଏକ ନାମକରଣ ମଧ୍ୟ କରିନେଲେ। ବିଖ୍ୟାତ ଟେନିସ ଖେଳାଳୀ ବିୟନବର୍ଗଙ୍କ ନାମାନୁସାରେ ବିୟନ ହେବ ତାଙ୍କ ସଂତାନର ନାମ।

ବିୟନର ଭୂମିଷ୍ଠ ହେବା ଖବର ପ୍ରଚାର ହେବାରେ ବିଳମ୍ୱ ହେଲା ନାହିଁ। ଦେଶ ବିଦେଶରୁ ଶୁଭେଚ୍ଛା ପତ୍ରମାନ ଟିନାଙ୍କ ପାଖକୁ ଆସିବାକୁ ଲାଗିଲା। ସେମାନେ ଶୁଭ ମନାସିଲେ ବିୟନ ତାର ନାଁର ସାର୍ଥକତା ରଖୁ।

ଖେଳଣା ଧରିବା ବଦଳରେ ଟିନା ବିୟନକୁ ଟେନିସ ର୍ୟାକେଟ ଧରେଇଲା। ପିଲାଟି ଦିନରୁ ବିୟନ ଦେଖିଲା, ମା ପାଇଥିବା ବିଭିନ୍ନ ଟ୍ରଫି, ଆଲବମରେ ମାର ଟେନିସ ଖେଳୁଥିବାର ଛବି। ଯେଉଁଦିନ ବିୟନ ପ୍ରଥମ ଥର ମା ସହ ଟେନିସ କୋର୍ଟକୁ ଗଲା, ସେଠାରେ ଉପସ୍ଥିତ ଶୁଭେଚ୍ଛୁମାନେ କହିଲେ ଏ ପିଲାକୁ କେହି ଅଟକେଇ ପାରିବେ ନାହିଁ। ବିୟନକୁ ଘେରି ସାମ୍ବାଦିକମାନେ ମିନି ରେକର୍ଡରର ସ୍ୱିଚ୍ ଅନ କଲେ ସେମାନେ କେତେ କଣ ପଚାରିଲେ ସେ କିନ୍ତୁ କିଛି ଉତ୍ତର ଦେଲା ନାହିଁ ମାତ୍ର ସେମାନେ ତାର ଦରୋଟି ର ଶବ୍ଦକୁ ନେଇ ଉତ୍ସାହିତ ହେଲେ।

ବିୟନର ଜନ୍ମ ପୂର୍ବରୁ ଟିନା ବିୟନକୁ ଟେନିସ ଖେଳାଳୀ ଛଡା ଅନ୍ୟ କିଛି କଳ୍ପନା କରି ନାହିଁ। କରିବ ବା କିପରି ? ବିଜ୍ଞାନୀମାନେ ବିୟନ ଜିନ୍‌ରେ ଭରିଛନ୍ତି ଟେନିସ୍ ଖେଳାଳୀ ହେବାର ସମସ୍ତ ଗୁଣ। ଯେଉଁ ଗର୍ଭଗୃହରେ ବିୟନର ଭ୍ରୁଣ ବଡ ହୋଇଛି, ତାର ସମସ୍ତ କୋଷରେ ଟେନିସ୍ ଖେଳ। ଟିନା ନିଜେ ବିୟନକୁ ଟେନିସ୍ ଖେଳର ଶିକ୍ଷା ଦିଏ– କିଭଳି ବାଁ ଗୋଡ ବୁଢ଼ା ଆଙ୍ଗୁଠି ଉପରକୁ ଉଠେଇ ଦେହର ଭାର ଅପର ଗୋଡ ଉପରେ ଥୋଇ କି ଭଳି ଅଣ୍ଟା ଓ କାନ୍ଧକୁ ଏକ ଛନ୍ଦରେ ଆଗକୁ ନେବାକୁ ହେବ, କି ଭଳି ଡାହାଣ ହାତ କହୁଣି ଶରୀର ଠାରୁ ଦୂରରେ ରଖି ବ୍ୟାକ ହାଣ୍ଡ ମାରିବାକୁ ହେବ ...

ପୃଥିବୀରେ ସମସ୍ତେ ଜାଣନ୍ତି ମୁଁ ବିଖ୍ୟାତ ଟେନିସ ଖେଳାଳୀ ଟିନାର ପୁଅ। ମୋ ମା କୁମାରୀ। ମା ଚାହିଁଲେ ଖୁବ୍ ସହଜରେ ବିବାହ କରିପାରନ୍ତା। ଏବେ ମଧ୍ୟ ମାର ଅନେକ ଭକ୍ତ, ତଥାପି ମା ବିବାହ କଲାନାହିଁ। ସେଥିପାଇଁ ମୋର ଗୋଟାଏ ଅଭାବ ରହିଗଲା। ମାତ୍ର ମା ମୋତେ ସେ ଅଭାବ ବୁଝିବାକୁ ଦେଇନାହିଁ। ମୋତେ ସେ ପ୍ରାଣଠୁ ଅଧିକ ଭଲପାଏ। ମୋତେ ନେଇ ତାର ଅନେକ ସ୍ୱପ୍ନ ଅନେକ ଆଶା–। ତାର ଇଚ୍ଛା, ତାଠୁ ବଡ ହୋଇ ତା ଉପରେ ବରାବର ସବାର ହୋଇଛି। ସେଥିରୁ ତାର ମୁକ୍ତି ନାହିଁ। ତାର ଆଶା ପାଇଁ ସେ ମୋତେ ସଂପୂର୍ଣ୍ଣ ବୁଝି ପାରେ ନାହିଁ। କେବେ ବୁଝିବାକୁ ଚେଷ୍ଟା କରିନାହିଁ– ମୋତେ ଟେନିସ ଭଲ ଲାଗୁଚି କି

ନାହିଁ। ଗତାନୁଗତିକ ନିୟମମାଫିକ ଖେଳ ଖେଳିଯାଏ। ମନେହୁଏ ମୁଁ ଗୋଟାଏ ସିସିଫସ, ମୋ ଉପରେ ଟେନିସ୍ ଲଦି ଦିଆହୋଇଛି। ମାକୁ ଏକଥା କହିଲେ ସେ ଦୁଃଖ ପାଇବ।

ଥରେ ମାକୁ ପ୍ରଶ୍ନ କରିଥିଲି କ'ଣ ଅଛି ଏ ଟେନିସ୍ ଖେଳରେ? ଗୋଟାଏ ବଲକୁ କିଏ କେତେ ରକମର କସରତ୍ କରି ମାରି ପାରୁଛି। ତା ପରେ ବଲଟା ଯଦି ଅପର ପଟ ଖେଳାଳୀ ହାତରୁ ଖସିଗଲା ସମସ୍ତଙ୍କର କି ଆନନ୍ଦ! ତାପରେ....। ମା ମୋ ପ୍ରଶ୍ନର ଉତ୍ତର ଦେଇ ପାରିନଥିଲା। କେବଳ ଅବିଶ୍ୱାସ ଆଖିରେ ମୋ ମୁହଁକୁ ବଲବଲ କରି ଅନେଇ ରହିଥିଲା।

ସେଇଠୁ, ନିଜକୁ ମୋ ଭିତରେ ଖୋଜିବାର ବୃଥା ଚେଷ୍ଟାକରି ହତାଶ ହୋଇଥିଲା।

ମୁଁ ଜାଣି ପାରୁନି, କେମିତି କେଜାଣି ଟେନିସ୍ କୋର୍ଟରେ ମୁଁ ଦେଖୁଛୁ ଧାନ ଗଛ। ଅନୁଭବ କରୁଛି ଣାଗୁଆ ଧାନ କ୍ଷେତର ସବୁଜ ନିଶ୍ୱାସ। ଧାନ କ୍ଷେତକୁ ଦେଖି ହୁଏ, ତାର ବାସନାକୁ ଅନୁଭବ କରି ହୁଏ ମାତ୍ର ତା ଉପରେ ଟେନିସ୍ ତ ଖେଳି ହେବ ନାହିଁ। ସତରେ ଖେଳି ହେବ ନାହିଁ....।

ଦିନେ ମା ଗଲା ହାର୍ଟ ସେଣ୍ଟରକୁ। ମୁଁ ଜାଣେ ସେ କାହିଁକି ଯାଇଥିଲା। ଆଉଥରେ ନିଶ୍ଚିତ ହେବା ପାଇଁ– କାଳେ ମୋ ଜିନ୍‌ରେ (gene) କିଛି ଭୁଲ ତ୍ରୁଟି ରହିଛି କି ନାହିଁ। ସେଠାରୁ ଫେରି ଅନେକ ସମୟ ଚୁପଚାପ ବସିଥିଲା। ତା ପରଠୁ ତାର କଣ ଯେ ହୋଇଛି ମୋ ସହ ପୂର୍ବଭଳି ବ୍ୟବହାର କରେ ନାହିଁ। ଆମ ପାରିବାରିକ ଡାକ୍ତରଙ୍କୁ ସବୁକଥା କହିଲାରୁ ସେ କହିଲେ, ମା କୁଆଡେ ନିଜ ସହ ସାଲିସ୍ କରିପାରୁ ନାହିଁ। ବିଚାରୀ ମା– ତାର ଏଇ ଅବସ୍ଥା ଦେଖି ମୁଁ ନିଜକୁ ଅପରାଧୀ ମନେ କରୁଛି। ମା ର ବୁଝାମଣା କାହା ସହ? ମୋ ସହିତ ନା ତା ନିଜ ସହିତ?

ଏହାପରେ ଟିନା ସହ ମୋର ସବୁ ସଂପର୍କ କଟିଯାଇଛି। ଆମେ ଦୁହେଁ ଆଉ ମାଆ ପୁଅ ନୋହୁଁ। ମୁଁ ଜାଣେନା ଟିନା ଉପର ଦେଇ ଯେଉଁ ଝଡ ବୋହି ଯାଉଛି, ତାହା ନିକଟରେ ଥମିବ କି ନାହିଁ। ଟିନା ପରି ଅନେକ ପିତାମାତା ଯେଉଁମାନଙ୍କର ଗୋଟିଏ ବୋଲି ସଂତାନ, ସେମାନେ ସେହି ସଂତାନ ଭିତରେ ଉଚ୍ଚାଶାର ଯେଉଁ ବୀଜ ରୋପଣ କରନ୍ତି, ସେଇ ବୀଜ ଦିନେ ନା ଦିନେ ସଂତାନ ଓ ପିତାମାତା ମଧ୍ୟରେ ଫାଟ ସୃଷ୍ଟି

କରିବ । ମୁଁ ଜାଣେନା ସେ ଫାଟ କେବେ ଯୋଡା ଯାଇପାରିବ କି ନାହିଁ?

ସେଦିନ ଆର୍ଟ ସେଣ୍ଟର ଡାଇରେକ୍ଟରଙ୍କୁ ଟିନା ଯେବେ ପ୍ରଶ୍ନ କରିଥିଲା, କାହିଁକି ଏପରି ହେଲା ?' ପ୍ରବୀଣ ଡାଇରେକ୍ଟରଙ୍କ ପାଖରେ ସେ କାହିଁକିର କୌଣସି ଉତ୍ତର ନଥିଲା । ସେ କହିଥିଲେ, ''ମ୍ୟାଡାମ, ଆମ ଉପରେ ଆଉ ଜଣେ ବିଜ୍ଞାନୀ ଅଛନ୍ତି ।''

ମୁଁ ଏବେ ମନ ଆନନ୍ଦରେ ଫେରିଯାଉଛି ପରମ ପିତାଙ୍କ ପାଖକୁ; ଆଗରୁ ପରମପିତା ମୋତେ କହିଥିଲେ ''ଯେତେବେଳେ ତୋତେ ପୃଥିବୀ ଆଉ କାମନା କରିବ ନାହିଁ, ସେତେବେଳେ ତୁ ନିଜ ଇଚ୍ଛାରେ ମୋ ପାଖକୁ ଫେରି ଆସିବୁ ।''

ମୁଁ ପରମପିତାଙ୍କ ପାଖକୁ ଫେରିଯାଉଛି ।

ହଁ, କୌଣସି ମୁହୂର୍ତ୍ତରେ ମୋତେ ଯଦି କିଏ ଏକାନ୍ତ ଭାବରେ ଲୋଡେ, କୌଣସି ସ୍ୱାର୍ଥ, ସଂଭାବନା ଓ କାମନାକୁ ଆଖି ଆଗରେ ନରଖି ଠିକ ସେତିକିବେଳେ ମୁଁ ଫେରିବି ।

ମୋତେ ପୃଥିବୀକୁ ହିଁ ଫେରିବାକୁ ପଡିବ ।



# ପୁନଶ୍ଚ

ଏ ଗଳ୍ପ ସେଇ ସମୟର ଯେତେବେଳେ ଏକ ବଡ ଧରଣର ମ୍ୟୁଟେସନ୍ ପରେ ମୃତ୍ୟୁ ମଣିଷଠୁ ଦୂରେଇ ଯାଇଛି। ଜରାବ୍ୟାଧି କବଳରେ ମଣିଷ ଆକ୍ରାନ୍ତ ହେଉ ନାହିଁ। ଅଙ୍ଗ ପ୍ରତ୍ୟଙ୍ଗ ଅକାମୀ ହେଲେ ତାହା କୃତ୍ରିମ ଅଙ୍ଗ ପ୍ରତ୍ୟଙ୍ଗ ସ୍ଥାପନା କେନ୍ଦ୍ର ମାନଙ୍କରୁ ସହଜରେ ବଦଳ ହୋଇପାରୁଛି। ରୋଗ ଶୋକ ଜରା ମୃତ୍ୟୁର ଅନୁପସ୍ଥିତିରେ ମଣିଷ ଜୀବନରେ ରହିଛି ଅଫୁରନ୍ତ ଯୌବନ। ପାର୍ଥିବ ସୁଖ ପାଇଁ ସାମଗ୍ରୀର ଅଭାବ ନାହିଁ। କେତେବେଳେ କେମିତି ବଜ୍ରପାତ ବା ସେଇ ଧରଣର ଆକସିଡେଣ୍ଟ ହେଲେ କାଁ ଭାଁ ଗୋଟିଏ ଅଧେ ମୃତ୍ୟୁ ହେଉଛି। ସେତେବେଳେ ସେଇ ମୃତ୍ୟୁର ସଂବାଦ ଖବର କାଗଜମାନଙ୍କରେ ବଡ ହରଫରେ ଛପା ହେଉଛି। ମୃତ୍ୟୁ ନ ଥିବାରୁ ମଣିଷର ଅସ୍ତିତ୍ୱ ସଂକଟ ନାହିଁ। ନିଜ ପରେ ନିଜ ଚିହ୍ନକୁ ପୃଥିବୀରେ ଛାଡି ଯିବାର ବ୍ୟଗ୍ରତା ତା ଭିତରେ ନାହିଁ। ସ୍ୱାମୀ ସ୍ତ୍ରୀ ଯଦି ସଂତାନର ଆବଶ୍ୟକତା ଅନୁଭବ କରନ୍ତି, ଏମବ୍ରିଓ ବ୍ୟାଙ୍କରେ ଥିବା ଷ୍ଟୋରେଜ କ୍ୟାନରୁ ବରାଦ ମୁତାବକ କ୍ଲୋନଡ ଭୃଣ ସଂଗ୍ରହ କରି ଇନକ୍ୟୁବେଟର ବା ଧାତ୍ରୀମାତାର ସହାୟତାରେ ତାର ବୃଦ୍ଧି କରାଇ ସଂତାନ ପାଳନର ସୁଖ ଲାଭ କରନ୍ତି। ଜରାୟୁର ଆବଶ୍ୟକତା କମିଯିବାରୁ ଅନେକ ମାତା ତାହା ବାହୁଲ୍ୟ ଅଙ୍ଗ ହିସାବରେ ଶରୀରରୁ ବାଦ ଦେଇଛନ୍ତି। କେତେକ ମାତା ଗର୍ଭଯନ୍ତ୍ରଣାର ସୁଖ ଉପଭୋଗ କରିବା ଲାଗି ଜରାୟୁ ଧାରଣ କଲେ ସମାଜରେ ସେମାନେ ହେଲେ ପ୍ରାଚୀନପନ୍ଥୀ।

ହସପିଟାଲରେ ସ୍ତ୍ରୀଙ୍କ ନିକଟରେ ଶୋଇଥିବା ନବଜାତକକୁ ଦେଖି ତୃପ୍ତିର ହସ ହସିଲେ ମିଷ୍ଟର କେପଲାର। ସେ ହସରେ ଥିଲା ସ୍ତ୍ରୀଙ୍କ ପ୍ରତି ସୋହାଗ। ଅନ୍ୟ ପାଞ୍ଚଟା ସଂତାନ ପରି ତାଙ୍କର ପୁଅ ଟେଷ୍ଟଟ୍ୟୁବ ବା ଇନକ୍ୟୁବେଟରରେ ବଡ ହୋଇନାହିଁ। ମାର ଗର୍ଭ ହୋଇ ସେ ପୃଥିବୀକୁ ଆସିଛି। କେପଲାରଙ୍କ ସୋହାଗର ହସ ପରିବର୍ତ୍ତିତ ହେଲା ବାତ୍ସଲ୍ୟରେ।... ପୁଅ ବଡ ହେଲା।

ପାଞ୍ଚଟା ସାଧାରଣ ଶିଶୁପରି ହସିଲା କାନ୍ଦିଲା। ତା'ପରେ ଯେଉଁ ଦିନ ମିଷ୍ଟର କେପଲାର ପୁଅକୁ ନେଇଗଲେ ହେଲଥ ସେଣ୍ଟରକୁ ତାର ହେଲ୍‌ଥ କାର୍ଡ କରିବା ପାଇଁ, ସେଇଦିନ ଜଣା ପଡିଲା ତାଙ୍କ ପୁଅ ଅନ୍ୟ ପାଞ୍ଚଟା ପୁଅ ପରି ନୁହେଁ। ପିଲାଟାର ଜେନିକ ମେକଆପରେ ରହିଛି ଏକ ଆଖି- ଦୃଶିଆ ପରିବର୍ତ୍ତନ। ଜିନ୍ ତତ୍ତ୍ୱବିଦ୍‌ମାନେ କହିଲେ, "It is a case of reverse mutation". ରିଭର୍ସ ମ୍ୟୁଟେସନ୍ କଣ ବୁଝିବା ପାଇଁ ମିଷ୍ଟର କେପଲାରଙ୍କୁ କିଛି ସମୟ ଲାଗିଲା। ସେ ଯେବେ ବୁଝିଗଲେ ଅର୍ଥାତ୍ ମୃତ୍ୟୁ ପୁଣି ତାଙ୍କ ପୁଅଠି ଫେରି ଆସିଛି। ତାଙ୍କ କପାଳରେ ଦେଖା ଦେଲା ଟୋପା ଟୋପା ଝାଳ। ତାଙ୍କ ପାଟି ଅଠାଳିଆ ହେଲା- ସେ ଢ଼ୋକ ଗିଳିଲେ, ପରେ ତାଙ୍କ ମନରେ ଯେଉଁ କଥାଟି ଆସିଲା ତାହା ହେଲା 'ରିଭର୍ସ ମ୍ୟୁଟେସନ୍' ତା ମା କୁ କିଭଳି କହିବି ?

ମିଷ୍ଟର କେପଲାର କଥା ଖୋଜୁଥିଲେ। ରିଭର୍ସ ମ୍ୟୁଟେସନ୍ କଥାଟା ସେଦିନ ସ୍ତ୍ରୀଙ୍କୁ କହି ଦେଇଥିଲେ। ଆଜି ସ୍ତ୍ରୀଙ୍କୁ ସାନ୍ତ୍ୱନାର କେତୋଟି ପଦ ସେ ହୁଏତ ସହଜରେ କହିପାରନ୍ତେ ''ଯାହା ଭବିତବ୍ୟ ତାହାକୁ ଖଣ୍ଡନ କରିହେବ ନାହିଁ।'' ଈଶ୍ୱରଙ୍କୁ ଦ୍ୱାହି ଦେଇ ନିଜ ଭାଗ୍ୟକୁ ମାନି ନିଅନ୍ତେ। ପିତାଙ୍କ କର୍ତ୍ତବ୍ୟରେ କେପଲାର କୌଣସି ତୃଟି ରଖିନାହାନ୍ତି। ଯୌବନର ଆରମ୍ଭରେ ପୁଅ ଯେବେ ସେମାନଙ୍କଠୁ ତିନି ହଜାର ମାଇଲ ଦୂରରେ ଅନ୍ୟ ଏକ ମହାଦେଶରେ ଚାକିରୀ ନେଇ ଚାଲିଗଲା, ସେଦିନ କେପଲାର ଦମ୍ପତି ଭାବିଥିଲେ ତିନି ହଜାର ମାଇଲ ଆଉ କେତେ ? କେଇ ଘଣ୍ଟାର ବାଟ।

ଚାହୁଁ ଚାହୁଁ ବିତିଗଲା ଚାଳିଶଟା ବର୍ଷ। ଚାଳିଶ ବର୍ଷରେ ପୃଥିବୀରେ ଛୋଟ ଛୋଟ କିଛି ଘଟଣା ଘଟିଲା। ସମୁଦ୍ରରେ ଛୋଟ ତରଙ୍ଗ ପରି ତାହା ମିଳେଇ ଗଲା। ଚାଳିଶ ବର୍ଷରେ କେପଲାର ଦମ୍ପତି ନିଜ ନିଜ ଯୌବନର ଭାରରେ କିଛିଟା କ୍ଳାନ୍ତ। ଜୀବନର ପୁନଃପୌନିକତା ବଂଚିବାର ସୁଆଦକୁ କରିଦେଇଛି ପାଣିଚିଆ। ଚାଳିଶବର୍ଷ ପରେ ପୁଅ ଫେରି ଆସିଛି। ପୁଅକୁ ଦେଖି ମିସେସ୍ କେପଲାରଙ୍କ ଚାକ୍ଷୁସ୍ତି ହେଲାନାହିଁ। କାହାକୁ ଦେଖୁଛନ୍ତି ସିଏ ? ତାଙ୍କର ପୁଅ ? ଆଖିରେ ମୋଟ ଲେନ୍ସର ଚଶମା। ମୁଣ୍ଡରେ କଞ୍ଚା ପାଚିଲା ବାଳ। ତତ୍ପରେ ସେ ଚିକ୍‌କଣ ଭାବ ନାହିଁ କଥାବାର୍ତ୍ତା ଚାଲିଚଳଣରେ ପୂର୍ବଭଳି ଉଦ୍ଦାମତା ନାହିଁ- ସବୁ ଧୀର ସ୍ଥିର ସଂଯତ। ମିସେସ୍ କେପଲାର ତାଙ୍କର ଅଭିଜ୍ଞତାର ପରିଧିରେ ଏଭଳି ମଣିଷ ଦେଖି ନାହାନ୍ତି। ବହିରେ ବାର୍ଦ୍ଧକ୍ୟ, ରୋଗ, ମୃତ୍ୟୁ କଥା ସେ ପଢ଼ିଛନ୍ତି। ହେଲେ ସେ ସମସ୍ତ ତାଙ୍କ ପାଇଁ କେବଳ ଏକ କବି କଳ୍ପନା। ମିସେସ୍ କେପଲାର ପୁଅକୁ ଦେଖି ଏକ ବଡ ନିଶ୍ୱାସ ଛାଡିଲେ। ସେ ନିଶ୍ୱାସ ଛାତିରୁ ବାହାର କରି ଆଣିଲା ଅନେକ ଗୁଡିଏ ପ୍ରଶ୍ନ। ସେଥିରୁ ଗୋଟିଏ ଏହାପରେ କଣ ?

ଆଜି ମିସେସ୍ କେପଲାରଙ୍କ ପାଇଁ ଆଉ ଦୀର୍ଘ ନିଶ୍ୱାସ ମଧ୍ୟ ନାହିଁ। ବୃଦ୍ଧଙ୍କ ମୁଣ୍ଡ ପାଖରେ ଗୋଟିଏ କଡକୁ ବସିଛନ୍ତି ମିସେସ୍ କେପଲାର। ବୃଦ୍ଧଙ୍କ ମୁଣ୍ଡ ତକିଆ ଉପରେ ସଯତ୍ନରେ ସ୍ଥାପିତ। ଖୁବ୍ ଧୀରେ ଧୀରେ ବୃଦ୍ଧଙ୍କ ଛାତି ଉଠୁଛି ପଡୁଛି। ମିସେସ୍ କେପଲାରଙ୍କ ଆଖିରେ ବିସ୍ମୟ। ଏହା ପୂର୍ବରୁ ଏତେ ନିକଟରୁ ସେ ମୃତ୍ୟୁକୁ ଆସିବାର ଦେଖିନାହାନ୍ତି। ବୃଦ୍ଧଙ୍କ ପାଦ ନିକଟରେ ଠିଆ ହୋଇଥିବା ସ୍ୱାମୀଙ୍କ ମୁହଁକୁ ମିସେସ୍ କେପଲାର ଅନେଇଲେ। ତାଙ୍କର ମନେ ହେଲା ମିଷ୍ଟର କେପଲାର ଏହିପରି ଏକ ଦିନର ଉପସ୍ଥିତି ଆଗରୁ ଜାଣିଥିଲେ। କିଛି କହିବାକୁ ଚେଷ୍ଟା କରି ମିଷ୍ଟର କେପଲାର ଶୁଖିଲା ଓଠ ଉପରେ ଜିଭ ବୁଲେଇ ଆଣିଲେ ତାଙ୍କର ଓଠ ବିଡ୍ ବିଡ୍ ହେଲା। ମିସେସ୍ କେପଲାର କେବଳ ଶୁଣିଲେ ରିଭର୍ସ ମ୍ୟୁଟେସନ୍। — ଜରା ଫେରି ଆସିଛି, ସାଥିରେ ବ୍ୟାଧି। ପଛକୁ ପଛ ମୃତ୍ୟୁ। ଘରେ ଶବ୍ଦ କହିଲେ ଶାୟିତ ବୃଦ୍ଧଙ୍କ ଅତି କଷ୍ଟରେ ଫୁସଫୁସ୍‌ରୁ ବାହାରୁଥିବା ଶେଷ କେତୋଟି ନିଶ୍ୱାସ ସହ ଘଡ ଘଡ ଶବ୍ଦ।

ଘରର ଶବ୍ଦ କ୍ରମେ ମିଳେଇ ଗଲା। ବାହାରେ ବର୍ଷା ପଡିବାର ଟୁପଟାପ ଶବ୍ଦ। ପୁଅର ଶୀତଳ କପାଳରେ ଚୁମ୍ବନଟିଏ ଦେଇ ମିସେସ କେପଲାର ଝର୍କା ବାଟେ ବାହାରକୁ ଅନେଇଲେ। ଝର୍କା ବାହାରେ ଉର୍ଦ୍ଧ୍ୱବାହୁ ହୋଇ ଠିଆ ହୋଇଛି ଗଛଟିଏ। କେତେଦିନ ହୋଇଗଲାଣି ସେ ସେମିତି ଠିଆ ହୋଇଛି– ପତ୍ର କଅଁଳୁଛି। ଫୁଲ ଫୁଟୁଛି ପତ୍ର ଝଡୁଛି, ପୁଣି ନୂଆ ପତ୍ର କଅଁଳୁଛି, ପ୍ରତିଥର ଗଛ ନେଉଛି ନୂଆ କଳେବର। ମିସେସ କେପଲାର ଭାବିଲେ ଏହାହିଁ ଭଲ। ଏତେଦିନ ଜୀବନ ବ୍ୟାପି ଆହରଣ କରିଥିବା ଜ୍ଞାନରେ ଜଗତକୁ ଦେଖିଥିଲେ ମିସେସ କେପଲାର। ଜଗତ ଥିଲା ତାଙ୍କ ଆଗରେ ଆଉ-ସେ ପଛରେ। ଆଜି ମୃତ୍ୟୁ ତାଙ୍କୁ ଦେଲା ଜୀବନର ଅନ୍ୟ ଏକ ପରିଚୟ। ସେ ନିଜକୁ ଅନୁଭବ କଲେ ଏକାନ୍ତ ଆପଣାର ହୋଇ। ସେ ଅନୁଭବରେ ଥିଲା କିଛି ଗୋଟାଏ ହରେଇ ଥିବାର ଅଭାବ।



# କଥା

ଆଉ ଟିକିଏ ହେଲେ କ'ଣ ଯେ ହୁଅନ୍ତା। ଡ୍ରାଇଭରଟି ଭଦ୍ରଲୋକ, କିଛି ଗାଳି ଗୁଲଜ କରି ସେ ଗାଡି ବଂକେଇ ଚାଲିଗଲା। ଡ୍ରାଇଭରର ସବୁକଥା କୁନାଲ କାନରେ ପଶିଲା ନାହିଁ ସେ କେବଳ ଶୁଣିଲା, 'ଶଳା କେଉଁ ଜଗତରେ ଅଛି—।' ଚିମ୍ପୁର ଅପରେସନ ପରଠୁ ଦିନରାତି କେତେବେଳେ ହେଉଛି ସେ ଖବର କୁନାଲଠି ନାହିଁ। ଆଜି ସକାଳୁ ଚିମ୍ପୁ ଅନେକ ଭଲ। ତା ମସ୍ତିଷ୍କର ନିସ୍ତେଜ ଭାବଟା ଆଉ ନାହିଁ। REM (rapid eye movement) ନିର୍ଦ୍ଦିଷ୍ଟ ସଂଖ୍ୟାରେ ହେଉଛି, ନାଡି ଠିକ ଅଛି। କୁନାଲର ବିଶ୍ୱାସ ଆଉ କେଇ ଘଣ୍ଟାରେ ଚିମ୍ପୁ ଅନେଇବ। ଏନ୍‌କେଫାଲୋଗ୍ରାମରୁ ଯାହା ଜଣାପଡୁଛି ସ୍ୱିଚସେଣ୍ଟର ଧୀରେ ଧୀରେ କାର୍ଯ୍ୟକ୍ଷମ ହେଉଛି ଅର୍ଥାତ୍ ପ୍ରୋମୋଟର ପ୍ରୋଟିନ୍ ଠିକ ଜାଗାରେ ପହଞ୍ଚିଛି। ଏବେ ଚିମ୍ପୁ ଲ୍ୟାଗିଂକ୍ସରେ ଖଂଜା ହୋଇଥିବା ମ୍ୟୁକ୍‌ସ ବ୍ୟାଣ୍ଡ ଗୁଡାକୁ ଯଦି ତାର ଶରୀର ଗ୍ରହଣ କରେ ତେବେ...। କୁନାଲ ଜାଣେ ଅନେକ ଗୁଡିଏ ଯଦିର ବାଧା ପାର ହେଲେ ତେବେ ଯାଇ ତାର ସ୍ୱପ୍ନ ସାର୍ଥକ ହେବ। ଏଥିପାଇଁ ଅନେକ ମୂଲ୍ୟ ତାକୁ ଦେବାକୁ ହୋଇଛି। ଏକ୍ସପେରିମେଣ୍ଟର ଡିଜାଇନ୍ ଶୁଣିଲା ପରେ ତାର ସତୀର୍ଥମାନେ ମୁଚକି ହସିଥିଲେ। କେବଳ ଡକଟର ରାଓ କହିଥିଲେ— 'ଠିକ୍ ଅଛି ଚେଷ୍ଟା କର ମୋର ବିଶ୍ୱାସ କିଛି ଗୋଟାଏ ହେବ..। ତୁ ପାରିବୁ।' ଚିମ୍ପୁପାଖରେ ଡକ୍ଟର ରାଓଙ୍କୁ ଛାଡି କୁନାଲ ଘରକୁ ଫେରୁଛି।

ଚାରିଦିନ ପରେ କୁନାଲକୁ ଦେଖି ସାବର୍ଣ୍ଣୀ କଡା କରି କିଛି କହିବାକୁ ଯାଇ ଅଟକି ଗଲା। କୁନାଲର ଆଖି ବସି ଯାଇଛି। ମୁହଁରେ କଞ୍ଚା ପାଚିଲା ଖୁଣ୍ଟା ଖୁଣ୍ଟା ଦାଢ଼ି। ବାଳ ଅବିନ୍ୟସ୍ତ ଚାରିଦିନ ପାନିଆ ପଡିନାହିଁ। ଶୁଖିଲା ହସଟିଏ ସାବର୍ଣ୍ଣୀକୁ ଦେଇ କୁନାଲ ଲଥ କରି ସୋଫା ଉପରେ ବସି ପଡିଲା। ଫ୍ରିଜରୁ ପାଣି ବୋତଲ ଆଣୁ ଆଣୁ ସାବର୍ଣ୍ଣୀ ଥଙ୍ଗାଳିଆ ସ୍ୱରରେ ପଚାରିଲା,

'ତାପରେ ମୋ ସଉତୁଣୀ କିପରି ଅଛି?' ହସି ହସି କୁନାଲ ଉତ୍ତର ଦେଲା, 'ଅନେକ ଭଲ—' 'ଛାଡି ଚାଲି ଆସିଲ ଯେ—' ସାବର୍ଣ୍ଣୀର କଥାରେ ଅଭିମାନ। କୁନାଲ ସେ ଆଡକୁ ନଯାଇ କହିଲା, 'ଡକ୍ଟର ରାଓ ଅଛନ୍ତି—।'

ରୋଷେଇ ଘର ଆଡକୁ ଯାଉ ଯାଉ ସାବର୍ଣ୍ଣୀ କହିଲା, ଆଉ ବସିଲ କାହିଁକି? ଖାଇ ସାରି ଟିକିଏ ବିଶ୍ରାମ ନିଅ। ପୁଣି ତ ବାହାରିବ—।

ବିଛଣାରେ ପଡୁ ପଡୁ ନିଦ ଆସିଯିବ। ତାହା ହେଲା ନାହିଁ। ବାରମ୍ବାର ମନରେ ସେଇ ଗୋଟିଏ କଥା ଘାରୁଥାଏ। ସବୁ ଠିକ୍ ହେବ ତ? ଯଦି ସଫଳ ହୋଇଯାଏ ତେବେ—। କୁନାଲ ଫେରି ଚାହିଁଲା ସେଇ ଦିନଟିକୁ—।

ଚିମ୍ପୁ ସହ ମୋର ପ୍ରଥମ ପରିଚୟର ଦିନଟି—କୁନାଲ ହସିଲା। ସେତେବେଳେ ସାବର୍ଣ୍ଣୀ ସହ ମୋର ପୂର୍ବଭାଗ ଚାଲିଥାଏ। ସେଦିନ ପାଞ୍ଚଟା ବେଳେ ସାବର୍ଣ୍ଣୀ ସହ ଚାଣକ୍ୟ ସିନେମା ହଲଠି ଦେଖା କରିବା କଥା, ତରତର ହୋଇ ହାତ କାମ ଗୁଡାକ ସାରୁଥାଏ। ଡକ୍ଟର ରାଓ ବୋଧହୁଏ ଅନୁମାନ କଲେ ନା' କ'ଣ? ମୋତେ ପଚାରିଲେ କାମ ସରିଗଲା। ମୁଁ ହଁ କହିଲାରୁ ପଚାରିଲେ ଇନଷ୍ଟିଚ୍ୟୁଟରେ କେତେ ଦିନ ହେଲା?

କହିଲି ଦଶ ଦିନ—

ସମସ୍ତଙ୍କର ସହ ପରିଚୟ ହେଲାଣି

-ପ୍ରାୟ

-ଚିମ୍ପୁ ସହ ପରିଚୟ ହୋଇଛି—

-ନା' ଚିମ୍ପୁ କିଏ?

ଆମର ଗ୍ରେଟ ଫ୍ରେଣ୍ଡ। ଆଣ୍ଟିବଡି ଡେଭେଲପ କରିବାରେ ଚିମ୍ପୁ ସବୁବେଳେ ପ୍ରଥମ। ଏବେ ତାର ବୟସ ହେଲାଣି ତଥାପି ଚିମ୍ପୁ ମୋତେ କେବେ ହତାଶ କରିନାହିଁ। ଆମେ କଥା ହେଉ ହେଉ ଇନଷ୍ଟିଚ୍ୟୁଟର ପ୍ରଧାନ ଅଂଶ ଛାଡି ବଗିଚା ଭିତର ନେଇ animal house(ପରୀକ୍ଷା ପାଇଁ ବ୍ୟବହୃତ ପ୍ରାଣୀମାନଙ୍କ ଘର)ଠି ପହଞ୍ଚିଲୁ। ମନେ ମନେ ଭାବୁଥାଏ କେମିତି ଶୀଘ୍ର ଯିବା। ମୋର ବାରମ୍ବାର ଘଡିକୁ ଅନେଇବା ଦେଖି ଡକ୍ଟର ରାଓ କହିଲେ "ବେଶୀ ସମୟ ଲାଗିବ ନାହିଁ। ଥରେ ପରିଚୟ ହୋଇ ଗଲେ ଚିମ୍ପୁକୁ ତୁମେ ମୋ ପରି ଭଲ ପାଇବ। You will love her." ଇନଷ୍ଟିଚ୍ୟୁଟର ଆନିମାଲ ହାଉସଟି ବିରାଟ ତିନିମହଲା କୋଠା। ତଳ ମହଲାରେ ଅଛନ୍ତି ପ୍ରାଇମେଟସ (ଅର୍ଥାତ୍ ବାନର କୁଳର ବିଭିନ୍ନ ଜୀବ) ଦ୍ୱିତୀୟ ମହଲାରେ ରଡେଣ୍ଟସ (ମୂଷା କୁଳର ଜୀବ) ତୃତୀୟ ମହଲାରେ ମାଛ, ଓ ବିଭିନ୍ନ ପୋକ। ଆମେ ତଳମହଲାର ବାଁ ପଟ କରିଡୋର ଦେଇ ଶେଷ ଘରେ ଅର୍ଥାତ ପାଞ୍ଚ ନମ୍ବର ଘରେ ପହଞ୍ଚିଲୁ। ଘରର ଅଧାରୁ ଅଧିକ ପଞ୍ଜୁରୀ ପରି ମୋଟ ମୋଟ ଲୁହା

ରଡ ଲାଗିଛି। ଆମକୁ ଦେଖି ରାଜକୀୟ ଭଙ୍ଗୀରେ ଚିମ୍ପୁ ଉଠି ଆସିଲା ଡକ୍ଟର ରାଓ ତା ପିଠି ଚାପୁଡ଼େଇ ଦେଲେ। ନିରାସକ୍ତ ଉଦାସ ଆଖିରେ ଚିମ୍ପୁ ମୋତେ ଅନେଇଲା। ମୁଁ ବିଜ୍ଞାନୀ, ମୋ ପାଇଁ ଜୀବନ, ହାଡ ରକ୍ତ ମାଂସର ଏକ ଶରୀର ମାତ୍ର। ତେବେ ସେଦିନ ଚିମ୍ପୁର ଗଭୀର ଆଖି, ବଳିଷ୍ଠ ବାହୁ ଲୋମଶ ଛାତିକୁ ଅନେଇ ମୋର ମନେ ହୋଇଥିଲା ଆହା ଏଭଳି ଏକ ସୁନ୍ଦର ଜୀବକୁ ମଣିଷ ନିଜ ସ୍ୱାର୍ଥ ପାଇଁ କେତେ କଷ୍ଟ ଦେଉଛି। ଡକ୍ଟର ରାଓ ଚିମ୍ପୁର ପରିଚୟ ଦେଲେ, 'ଦୀର୍ଘ ଆଠବର୍ଷ ହେଲା ଆଫ୍ରିକା ଜଙ୍ଗଲ ଛାଡି ଚିମ୍ପୁ ଏହିଠାରେ ରହିଛି। ତୁମେ ତ ଜାଣ ବିବର୍ତ୍ତନ ସିଡିରେ ସିଂପାଞ୍ଜି ମଣିଷର ଖୁବ୍ ପାଖାପାଖି। ଗିବନ ଓରାଂଓଟାଂ, ଗରିଲା ମଣିଷର ପାଖାପାଖି ହେଲେ ମଧ୍ୟ ସିଂପାଞ୍ଜି ପରି ସହ୍ୟ କରିବାର କ୍ଷମତା ସେମାନଙ୍କର ନାହିଁ।' ମୁଁ ଡକ୍ଟର ରାଓଙ୍କ କଥା ଗୁଡ଼ିକୁ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଉଥାଏ। ସେହିଦିନ ମୋର ମନେ ହୋଇଥିଲା ଯଦି ଚିମ୍ପୁ କଥା କହିପାରନ୍ତା? ତାର କଥା ଶୁଣି ଏବେ ଯେମିତି ଉଦାସ ଆଖିରେ ଅନେଇଛି କ'ଣ, ସେମିତି ଅନେଇଥାନ୍ତା? ମୁଁ ଚିମ୍ପୁର ଆଖିର ଭାଷା ପଢ଼ିପାରିଲି ନାହିଁ। ସେଦିନ ଚିମ୍ପୁକୁ ନେଇ ମନଟା ଖରାପ ହୋଇଯାଇଥିଲା। ପରେ ସେଇକଥା ଯେବେ ସାବର୍ଣ୍ଣୀକୁ କହିଥିଲି ଉତ୍ତରରେ ସାବର୍ଣ୍ଣୀ ଭଲ କଥାଟିଏ କହିଥିଲା, କଥା ଥାଇ ମଧ୍ୟ ସବୁ ମଣିଷ କଣ ''କଥା କହି ପାରୁଛନ୍ତି?''

ବିଛଣାରେ ଗଡୁ ଗଡୁ କେତେବେଳେ ଆଖି ଲାଗିଯାଇଛି ଚାରି ରାତିର ବକେୟା ନିଦ ଏକାଠି କୁନାଲ ଆଡକୁ ମାଡି ଆସିଲେ। ନିଦରେ କୁନାଲ ଦେଖିଲା ତାର ପରିଚିତ ସମୁଦ୍ର କୂଳ। ସେ ଆଉ ସାବର୍ଣ୍ଣୀ ବସିଛନ୍ତି, ପରିଚିତ ଦୃଶ୍ୟ ସାବର୍ଣ୍ଣୀ ବାଲିରେ ଅଙ୍କା ବଙ୍କା ଗାର କାଟି ଚାଲିଛି। କୁନାଲ ସମୁଦ୍ର ଲହଡିକୁ ଅନେଇଛି, ଦୁହେଁ ଚୁପଚାପ ବସିଛନ୍ତି, ସବୁ ଶବ୍ଦ ତାଙ୍କ ପାଇଁ ମୂକ ପାଲଟି ଯାଇଛନ୍ତି। ନିରବତା ଭାଙ୍ଗି କୁନାଲ କହିଲା କିଛି କୁହ— ତୁମେ କିଛି କୁହ— ବେଳେବେଳେ ଭାବେ- ଚୁପ ରହି ଅଧିକ କଥା କହି ହୁଏ। ଯଦି ବଂଧୁତ୍ୱ ଗାଢ଼ ହୁଏ।

ସ୍ୱପ୍ନର ଦୃଶ୍ୟ ସହଜରେ ବଦଳି ଗଲା। କୁନାଲ ଶୁଣିଲା ଅନେକ ଶବ୍ଦର କୋଳାହଳ। ପଶୁ ପକ୍ଷୀ ବୃକ୍ଷ ଲତା ସମସ୍ତେ ମଣିଷ ପରି କଥା ହେଉଛନ୍ତି। କଥା ପିଠିରେ କଥା। ସମସ୍ତେ କେବଳ କହୁଛନ୍ତି। କେହି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି। କଥା କହି ଯେ ଯାହାର ଅଧିକାର ଜାହିର କରୁଛନ୍ତି। ଅଧିକାର ପାଇଁ ଟଣାଓଟରା— ଚିତ୍କାର ହୋ ହୋ ଘୋ ଘୋ—

ସାବର୍ଣ୍ଣୀ ଡାକରେ କୁନାଲର ନିଦ ଭାଙ୍ଗି ଗଲା। ଲ୍ୟାବ ଯିବ ପରୀ। ଡକ୍ଟର ରାଓ ଫୋନ କରିଥିଲେ ଆଖି ମେଲି ବଲବଲ ହୋଇ ସୁବର୍ଣ୍ଣାକୁ ଅନେଇଲା କୁନାଲ ଚାରିଆଡ଼ — ଶୁନ୍‌ଶାନ୍। କେବଳ ଫ୍ୟାନ୍‌ର ଶବ୍ଦ

— କେତେଟା ବାଜିଲାଣି

— ପାଞ୍ଚଟା

— ଡକ୍ଟର ରାଓ କଣ କହୁଥିଲେ -

କହିଲେ Congratulation. Party ଦିଅ ।

ମୁଁ କହିଲି ଆପଣ ଆଗେ ଦିଅନ୍ତୁ ସେଇଠୁ କହିଲେ Most Welcome. ତା'ପରେ କହିଲେ ମୋର ମନେ ହେଉଛି ଆମେ ବୋଧହୁଏ ପାରିଲୁ ।

ସ୍ନେହ ମିଶା ଆଖିରେ କୁନାଲ ସାବର୍ଣ୍ଣୀକୁ ଅନେଇଲା ।

ମୁଁ ଚା ଆଣେ, କହି ସାବର୍ଣ୍ଣୀ ଚାଲିଗଲା ।

ସାବର୍ଣ୍ଣୀଠୁ ଚା ଯେ ନେଇ ଓଠରେ ଲଗଉ ଲଗଉ କୁନାଲ ପଚାରିଲା । ଚିମ୍ପୁ ଯେଉଁଦିନ ଆମ ପରି କଥା କହିବ, ତାର ମନର ଭାବକୁ ପ୍ରକାଶ କରିବ ଆମକୁ ଦେଖିଲେ ସେ କଣ କହିବ ?

— ଯଦି ତାର କୃତଜ୍ଞତା ବୋଧ ଥାଏ ତେବେ ନିଶ୍ଚୟ ଧନ୍ୟବାଦ ଦେବ, ବାନର କୁଳରେ, ସେ ହେବ ପ୍ରଥମ ବାନର ଟିଏ ମଣିଷ ଭଳି କଥା ହେବ ।

— ମୁଁ ଭାବୁଛି ସେଥିରେ ଚିମ୍ପୁର ଲାଭ ।

— ଆପତ ଲାଭ କିଛି ନାହିଁ ଯେ ପର୍ଯ୍ୟନ୍ତ ଆଉ ପାଞ୍ଚଟା ସିଂପାଞ୍ଜି କଥା କହୁନାହାନ୍ତି ।

— ଏ ଯାଏ ତା'ପାଇଁ କଥାର ଆବଶ୍ୟକତା ପଡ଼ି ନଥିଲା । ନିରବତାର ଭାଷାରେ ସେ ସଂଯୋଗ ରଖିପାରୁ ଥିଲା ।

— ସେତେବେଳେ ସେ ଗୋଟିଏ ଉପାୟରେ ସଂଯୋଗ କରୁଥିଲା ଏବେ ଆହୁରି ସହଜ ଉପାୟରେ ମନକଥା କହିବ ।

— ଏହାପରେ ଯେତେବେଳେ ଗାଈ ଗୋରୁ କୁକୁର ବିଲେଇ ସବୁ କଥା କହିବେ -

— ଭଲ ହେବ । ମଣିଷର ଏକାକିତ୍ୱ ଦୂର ହେବ । ସେମାନେ ମଣିଷକୁ ସୁଖ ଦୁଃଖରେ ଆହା ପଦେ କହିବେ । ଏବେ ତ ମଣିଷ ପାଖରେ ଦଣ୍ଡେ ଫୁରସତ ନାଇଁ ଯିଏ ଯାହା ନିଜ ପାଇଁବ୍ୟସ୍ତ ଅନ୍ୟ ପାଇଁ ସମୟ କାହିଁ—

କୁନାଲ ହସିଲା, ବୁଝିଲା ସାବର୍ଣ୍ଣୀ କଣ କହିବାକୁ ଚାହୁଁଛି କଥା ବୁଲେଇ ସେ କହିଲା, 'ଯଦି କୁକୁର ବିଲେଇ କଥା ହୁଅନ୍ତି ମଣିଷ ସେମାନଙ୍କ

ସହ ସୁଖ ଦୁଃଖ ହେବା ପରିବର୍ତ୍ତେ ତାଙ୍କର ଦୁର୍ବଳତା ଖୋଜି ତାଙ୍କ ଉପରେ ତାର ପ୍ରଭୁତ୍ୱ ଆହୁରି ଯୋରଦାର କରିବ। ମଣିଷ ନିଜ ସ୍ୱାର୍ଥ ପାଇଁ—

—ତେବେ ଏତେ କଷ୍ଟ କରି ଚିମ୍ପୁକୁ ଭାଷା ଦେଲ କାହିଁକି ?

—ମୋ ସ୍ୱାର୍ଥ ପାଇଁ। ମୁଁ ହେବି ପ୍ରଥମ ମଣିଷ ଯିଏ ଇତର ପ୍ରାଣୀ କଣ୍ଠରେ ମଣିଷର ଭାଷା ଦେଇଛି।

ଚା କପ ଥୋଇ ନିଜ ମନକୁ ମନ କହିଲା ଏବେ ଆଉ ଫେରି ଯିବାର ବାଟ ନାହିଁ। ମୁଁ ଯାଏ ସମସ୍ତେ ଚାହିଁ ବସିଥିବେ। କହି କୁନାଲ ଉଠିଗଲା।

କନଫରେନ୍ସ ହଲରେ ମିଳିତ ହୋଇଛନ୍ତି ଇନଷ୍ଟିଚ୍ୟୁଟର ବୈଜ୍ଞାନିକମାନେ। ପ୍ରତି ଦୁଇମାସରେ ସେମାନଙ୍କ ଏହି ମିଟିଂ ହୁଏ। ବିଭିନ୍ନ ଲ୍ୟାବରେଟୋରୀରେ ହୋଇଥିବା କାମ କେତେଦୂର କଣ ହେଲା, ପରୀକ୍ଷା ବେଳେ ଉପୁଜିଥିବା ସୁବିଧା ଅସୁବିଧା ଏହି ମିଟିଂରେ ଆଲୋଚିତ ହୁଏ। ଚିମ୍ପୁ ଉପରେ ହୋଇଥିବା ପରୀକ୍ଷା ଏତେ ଦିନ ଡକ୍ଟର ରାଓଙ୍କ ଲ୍ୟାବ ଭିତରେ ସୀମିତ ଥିଲା ଆଜି ଡକ୍ଟର ରାଓଙ୍କ ପାଳି ଆସିଲାରୁ ସେ ଠିଆ ହୋଇ କହିଲେ, "ବନ୍ଧୁଗଣ, ଏତେଦିନ ଆମ ଲ୍ୟାବରେ ହେଉଥିବା କାର୍ଯ୍ୟ ସଂପର୍କରେ ଆପଣମାନେ ଊଣା ଅଧିକେ ପରିଚିତ। କେଇଦିନ ତଳେ ଡକ୍ଟର କୁନାଲଙ୍କ ତତ୍ତ୍ୱାବଧାନରେ ଆମେ ଏକ ନୂତନ ପରୀକ୍ଷା କରିଥିଲୁ, ଚିମ୍ପୁକୁ ଆପଣମାନେ ଚିହ୍ନନ୍ତି କହି ପ୍ରୋଜେକ୍ଟରରେ ଚିମ୍ପୁର ଫଟୋ ଦେଖେଇଲେ। ଚିମ୍ପୁ ମସ୍ତିଷ୍କର speech centre (ମସ୍ତିଷ୍କର ଯେଉଁ ଅଂଚଳରେ କଥା କହିବାର କୋଷମାନ ରହିଛି) କୁ Micro electrorod ସାହାଯ୍ୟରେ ଆମେ ପ୍ରଥମେ activate କଲୁ। ଦେଖିଲୁ activation (ଉତ୍ତେଜନା) ଫଳରେ ସେଠାରେ କିଛି ନୂତନ ପ୍ରୋଟିନ୍ ତିଆରି ହେଉଛି। ତା ପରେ ସେଇ ପ୍ରୋଟିନ୍ ପରିବର୍ତ୍ତେ ଚିମ୍ପୁ ଦେହରେ antibody ତିଆରି ହେଲା। ନୂତନ antibody କୁ ଆମେ ଫ୍ଲୋରୋକ୍ରୋମ ଦେଇ ଟ୍ୟାଗ୍ କଲୁ। ପରେ ସେଇ ପ୍ରୋଟିନ୍ ଯେବେ ଚିମ୍ପୁ ଶରୀରରେ ଦିଆଗଲା, ଦେଖାଗଲା ତାହା ଯାଇ speech centre ଠି ପହଞ୍ଚୁଛି ଓ ସେଇ ଯାଗାର କୋଷମାନେ କାର୍ଯ୍ୟକ୍ଷମ ହେଉଛନ୍ତି। ଅର୍ଥାତ୍ ସେଇ ପ୍ରୋଟିନ୍ ଏକ ପ୍ରୋମୋଟର ଭାବେ କୋଷମାନଙ୍କଠି କାର୍ଯ୍ୟ କରୁଛି। ପ୍ରଥମ ପର୍ଯ୍ୟାୟରେ ଏହି ପରୀକ୍ଷାରେ ସଫଳ ହେଲା ପରେ ଆମେ ଚିମ୍ପୁର ଲ୍ୟାରିଙ୍କ୍ସ ତଳକୁ ଦୁଇଟି ମ୍ୟୁକସ ପେଶୀ ଟ୍ରାନ୍ସପ୍ଲାଣ୍ଟ କଲୁ ଏହା ଫଳରେ ଚିମ୍ପୁର ସ୍ୱରପେଟିକା ଆମ ସ୍ୱରପେଟିକା ପରି ହୋଇଗଲା। କିଛି ଦିନ ଚେଷ୍ଟା କଲା ପରେ ଚିମ୍ପୁ ଏବେ ଭଙ୍ଗା ଭଙ୍ଗା ବାକ୍ୟ କହୁଛି। ମୁଁ ତା କଥା ଟେପ କରି ଆଣିଛି କହି ଡକ୍ଟର ରାଓ ଟେପ ଚାଲୁକଲେ— ପ୍ରଥମେ କିଛି ଅସ୍ପଷ୍ଟ ସ୍ୱର ତା ପରେ ସ୍ପଷ୍ଟ

ଇଂରାଜୀରେ ଚିମ୍ପୁ କହିଲା Hello my name is Chimpu. ମୋ ନାଁ ଚିମ୍ପୁ। ଡକଟର ରାଓ ଟେପ ବନ୍ଦ କଲେ ତା ପରେ କହିଲେ ଚିମ୍ପୁ ଏକ ପ୍ରାଚୀନ ଭାଷା ଶିଖିଥିଲେ ତା ସହିତ ଭାଷାଟି ଖାପ ଖାଆନ୍ତା ମାତ୍ର ତାହା ସମସ୍ତଙ୍କ ବୋଧଗମ୍ୟ ହୁଅନ୍ତା ନାହିଁ। ତେଣୁ ସବୁଠାରୁ ଅଧିକ ଲୋକ ବୁଝିବାର ଭାଷା ଇଂରାଜୀ ତାକୁ ଶିଖେଇଲୁ।

କିଛି ଦିନ ପରର ଘଟଣା। ବିଜ୍ଞାନ ଭବନରେ ସଭା ଦେଶ ବିଦେଶର ବିଜ୍ଞାନୀମାନେ ଆସିଛନ୍ତି। ଆସିଥାନ୍ତି ନେତା ମାନ୍ୟଗଣ୍ୟ ବ୍ୟକ୍ତିମାନେ। ବିଭିନ୍ନ ଟିଭି ସଂସ୍ଥାର କର୍ମଚାରୀମାନେ ଷ୍ଟେଜ ସାମନାରେ କ୍ୟାମେରା ଲାଇଟ ଆଦି ନେଇ ଏପଟ ସେପଟ ହେଉଥାନ୍ତି। ଷ୍ଟେଜର ଗୋଟିଏ କଡକୁ ବସିଛି ଚିମ୍ପୁ ତାରଗୋଟିଏ ପଟେ କୁନାଲ ଅନ୍ୟ ପଟେ ଡକଟର ରାଓ, ତାଙ୍କ ପାଖରେ ଇନଷ୍ଟିଚ୍ୟୁଟ ଡାଇରେକଟର ଡକ୍ଟର ଶ୍ରୀ ବାସ୍ତବ ତାଙ୍କ ପାଖକୁ ବିଜ୍ଞାନ ମନ୍ତ୍ରୀ ତାଙ୍କ ପାଖରେ ମ୍ୟାକ୍ସ ପ୍ଲାଙ୍କ ଇନଷ୍ଟିଚ୍ୟୁଟରୁ ଆସିଥିବା ବିଜ୍ଞାନୀ ଡକଟର ବିଅରମ୍ୟାନ। ଡକଟର ରାଓ ପ୍ରଥମେ ଚିମ୍ପୁ ଓ ତାଙ୍କର ପରୀକ୍ଷା ସମ୍ବନ୍ଧରେ କହିଲେ। ତାଙ୍କ ପରେ ଡାଇରେକଟର ଶ୍ରୀବାସ୍ତବଙ୍କ କହିବା କଥା ମାତ୍ର ମନ୍ତ୍ରୀ ମହୋଦୟଙ୍କ ଅନ୍ୟ କାର୍ଯ୍ୟକ୍ରମ ଥିବାରୁ ସେ ଠିଆ ହେଲେ କହିବା ପାଇଁ। ଖୁବ୍ କମ ସମୟରେ ସେ ଭାବବିହ୍ୱଳ ହୋଇ ପଡିଲେ ଉଦ୍ଧାତ୍ତ କଣ୍ଠରେ ସେ କହିଲେ– 'ଏହି ସେଇ ପୂଣ୍ୟଭୂମି ଭାରତ ପୂର୍ବେ ଯେଉଁଠି ପଶୁପକ୍ଷୀମାନେ କଥା କହୁଥିଲେ। ଏହା ଆମର ପଞ୍ଚତନ୍ତ୍ରରେ ଅଛି। ମହାଭାରତରେ ବଗ, ନେଉଳ ଆଦି କଥା କହିବାର ଦୃଷ୍ଟାନ୍ତ ରହିଛି। ମଝିରେ କେତୋଟା ବର୍ଷ ଦେଶରେ ଅନାଚାର, ବ୍ୟଭିଚାର, ଭ୍ରଷ୍ଟାଚାର ବଢ଼ି ଯିବାରୁ ପଶୁପକ୍ଷୀମାନେ ମୂକ ପାଲଟି ଯାଇଥିଲେ। ଆମ ସରକାର ଆସିଲା ପରେ ଆମ ପ୍ରଧାନମନ୍ତ୍ରୀଙ୍କ ବଳିଷ୍ଠ ନେତୃତ୍ୱରେ ଦେଶରେ ପୁଣି ସେଇ ସୁଦିନ ଫେରି ଆସୁଛି ତେଣୁ ପଶୁପକ୍ଷୀମାନେ ପୁଣି କଥା କହିବା ଆରମ୍ଭ କଲେଣି; ବିଜ୍ଞାନୀମାନେ ନିମିତ୍ତ ମାତ୍ର, ଅସଲରେ ସବୁ ସମ୍ଭବ ହୋଇଛି–' କରତାଳିରେ ବିଜ୍ଞାନ ଭବନ ପ୍ରକମ୍ପିତ ହେଲା। ଏହାପରେ ଚିମ୍ପୁର ପାଳି। ମାଇକ୍ରୋଫୋନ ଚିମ୍ପୁ ମୁହଁ ପାଖରେ ଖଞ୍ଜା ହେଲା। ଅନେକ ଗୁଡିଏ କ୍ୟାମେରା ଏକାଠି ଚାଲୁ ହେଲା ଦୁଇହାତ ଉପରେ ଭରା ଦେଇ ଚିମ୍ପୁ ଠିଆ ହୋଇ, ମୁହଁଟିକୁ ମାଇକ୍ରୋଫୋନ ପାଖକୁ ନେଇ କହିଲା, "ବନ୍ଧୁଗଣ ପୃଥିବୀରେ ଏତେ କଥା ହେଉଛି ମୁଁ ଆଉ ଅଧିକ କଣ କହିବି ? ଧନ୍ୟବାଦ।"

ହଠାତ କାହିଁକି କୁନାଲର ମନେ ହେଲା ଏତେ ବେଳଯାଏ ମାଇକ୍ରୋଫୋନ ପଛରେ ଠିଆ ହୋଇଥିଲା କିଏ ? ସେ ନା ଚିମ୍ପୁ ?



# ସମୟ ଅସମୟ

ଅସମୟରେ ଇଣ୍ଟରକମ ବିପ୍ ବିପ୍ କଲା। ଅବଶ୍ୟ ଆମର ଏଠାରେ ସମୟ ଅସମୟ ଆଉ କ'ଣ? ଏଠାକାର ସମୟ ପୃଥିବୀର ଘଡ଼ିରେ ବନ୍ଧା ହୋଇନାହିଁ। ଏଠି ଦିନ ରାତି ହୁଏନାହିଁ। ବର୍ଷ ମାସ ବା ହେବ କେମିତି? ସମୟ ଏଠାରେ ଆକ୍ଷରିକ ଅର୍ଥରେ ଅନନ୍ତ ପ୍ରବାହମାନ। କେବଳ ଶରୀର ମଧ୍ୟରେ ଥିବା ଦୈବିକ ଘଡ଼ିଟା ଚେତେଇ ଦିଏ ଭୋକ ଶୋଷ ନିଦ ବାହ୍ୟ। ଇଣ୍ଟରକମଟା ଯେତେବେଳେ ଦିପ୍ ଦିପ୍ କଲା ମୁଁ ବଙ୍କର ଉପରେ ଶୋଇ ଅଣ୍ଟାରେ ବେଲ୍ଟଟା ଭିଡୁ ଥାଏ। ଆଉ ଭାବୁଥାଏ, ଆଉ କେତେ ଦିନ ଏଇଭଳି ବେଲ୍ଟ ଭିଡି ଶୋଇବାକୁ ହେବ? ତିନି ବର୍ଷ ତଳେ ଜାତିସଂଘ ତରଫରୁ ଆମେ ଛଅଜଣ ବୈଜ୍ଞାନିକ ମହାକାଶର ଏହି ଗବେଷଣାଗାରରେ କାମ କରିବା ପାଇଁ ମନୋନୀତ ହୋଇଥିଲୁ। ଆମର କାମ ପ୍ରାୟ ସରି ଆସିଲାଣି। ଯେଉଁ ଦୁଇଟି ମାଙ୍କଡ ଆମ ସହ ଆସିଥିଲେ ସେମାନେ ମହାକାଶର ପରିବେଶରେ ନିଜକୁ ମନେଇ ନେଲେ, ବର୍ତ୍ତମାନ ସେମାନେ ସସପେନ୍‌ଡେଡ୍ ଆନିମେସନ୍‌ରେ ଅଛନ୍ତି। ଆଉ କେଇଟା ଦିନରେ ସେମାନଙ୍କୁ ଆନଡ୍ରୋମିଡା ନକ୍ଷତ୍ର ଲୋକକୁ ପଠାଯିବ। ପୃଥିବୀ ସମୟ ହିସାବରେ ଆନଡ୍ରୋମିଡା ନକ୍ଷତ୍ର ଲୋକକୁ ମାଙ୍କଡ ଦୁଇଟିକୁ ପହଞ୍ଚିବାକୁ ଦେଢ଼ ଶହ ବର୍ଷ ଲାଗିଯିବ। ଏଇ ଲମ୍ବ ସମୟ ସେମାନେ ଗାଢ଼ ନିଦରେ ଶୋଇ ରହିବେ ସେମାନଙ୍କ ବୟସ ବଢ଼ିବ ନାହିଁ। କିମ୍ବା ଶରୀରରେ କୌଣସି ଜୈବିକ ପରିବର୍ତ୍ତନ ହେବ ନାହିଁ। ସେଇ ନକ୍ଷତ୍ର ଲୋକର ଜି-୩୨ ନମ୍ବର ଗ୍ରହରେ ସେମାନେ ଓହ୍ଲେଇବେ। ସେଠାକାର ପରିବେଶ ଅନେକଟା ପୃଥିବୀର ପରିବେଶ ପରି। ଆଶା କରାଯାଉଛି ସେଠାରେ ଏକ ଉନ୍ନତ ସଭ୍ୟତା ରହିଛି। ମାଙ୍କଡ ଦୁଇଟି ଯଦି ସେଠାକାର ପରିବେଶରେ ଖାପ ଖୁଆଇ ପାରିବେ, ତେବେ ସେଠାରେ ସେମାନେ ଏକ ନୂତନ ସଂସାର ଆରମ୍ଭ କରିବେ। ଏହି ସମସ୍ତ କଥା ଚିନ୍ତା କରୁ କରୁ ମୁଁ ତଳ ମହଲାକୁ ଓହ୍ଲେଇ ଆସିଲି।

ଆମର ଏଇ ସ୍ପେସସିପ୍‌ଟି ତିନି ମହଲାର। ଉପର ମହଲାରେ ଆମର ରହିବା ବ୍ୟବସ୍ଥା, ମଝି ମହଲାରେ ରହିଛି ବିଜ୍ଞାନଗାର। ତଳ ମହଲାରେ ମହାକାଶଯାନ ପାଇଁ ବିଭିନ୍ନ ଯନ୍ତ୍ରପାତିର ଘର। ସାଙ୍ଗକୁ ରହିଛି ପାୱାର ଜେନେରେସନ୍ ସେକସନ କମ୍ୟୁନିକେସନ୍ ସେକ୍‌ସନ। କମ୍ୟୁନିକେସନ ସେକସନ୍ ସାଙ୍ଗକୁ ଲାଗିଛି ଗୋଟିଏ ବ୍ୟାଲକୋନୀ। ଏହି ବ୍ୟାଲକୋନୀ ଦେଇ ଆବଶ୍ୟକ ପଡିଲେ ଆମେ ବାହାରକୁ ଯାଇ କିଛି ସମୟ ମହାଶୂନ୍ୟରେ ପହଁରି ଆସୁ।

ତଳ ମହଲାକୁ ଓହ୍ଲେଇ ସିଧା ଗଲି କମ୍ୟୁନିକେସନ୍ ସେକସନକୁ ର୍‌ୟାଡର ସ୍କ୍ରିନ୍ ଆଗରେ କ୍ଲିଭ୍‌ମ୍ୟାନ ବସିଥାନ୍ତି। ମୋର ଆସିବା ବୁଝିପାରି ସେ ର୍‌ୟାଡର ସ୍କ୍ରିନ୍‌ରେ ମହାକାଶର ମାଛି ଅନ୍ଧାରରେ ଦପ୍ ଦପ୍ କରୁଥିବା ଗୋଟିଏ ଆଲୋକିତ ବସ୍ତୁ ଉପରେ ସର୍ଚ୍ଚର ଆଇ ଫୋକସ୍ କଲେ। ବସ୍ତୁଟିକୁ ଦୂରରୁ ଦେଖି ମନେ ହେଲା ଗୋଟିଏ କଫିନ। ଗମ୍ଭୀର ପ୍ରକୃତିର ସ୍ୱଳ୍ପବାକ୍ କ୍ଲିଭ୍‌ମ୍ୟାନ ର୍‌ୟାଡର ସ୍କ୍ରିନରୁ ଆଖି ନ ଉଠେଇ କହିଲେ, 'କୌଣସି ମହାକାଗତିକ ବସ୍ତୁ ନୁହେଁ।'

ମୁଁ ମୁଣ୍ଡ ଟୁଙ୍ଗାରି କହିଲି ହୁଁ।

ଅଦ୍ଭୁତ ଆକୃତିର ବସ୍ତୁଟି କଣ ହୋଇପାରେ ଆମେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲୁ ନାହିଁ। ବସ୍ତୁଟି ଆମଠୁ ଉଣାଅଧିକେ ପାଞ୍ଚଶହ ମାଇଲ ଦୂରରେ ରହିଛି। କ୍ଲିଭ୍‌ମ୍ୟାନଙ୍କୁ କହିଲି ବିଭିନ୍ନ ଫ୍ରିକ୍ୟୁଏନ୍ସିରେ ତରଙ୍ଗ ପଠେଇବା ପାଇଁ। କାଳେ କିଛି ଉତ୍ତର ଆସିବ। ମାତ୍ର କୌଣସି ଉତ୍ତର ଆସିଲା ନାହିଁ।

ମୁଁ ସିପର କ୍ୟାପଟେନ୍। ଯାହା ନିଷ୍ପତ୍ତି ମୋତେ ନେବାକୁ ନେବ। ମହାକାଶରେ ରଙ୍ଗବେରଙ୍ଗର ଏଇଭଳି ଅନେକ ବସ୍ତୁ ଦେଖାଯାଏ। ତେବେ ଦପ୍‌ଦପ୍ କରି ଆଲୋକ ବାହାରିବା ବସ୍ତୁ ଏପର୍ଯ୍ୟନ୍ତ ଦେଖିନାହୁଁ। କୌତୁହଳ ହେଉଛି। ତେବେ ଅହେତୁକ ଉତ୍ସୁକତା ଯୋଗୁ ଯଦି କୌଣସି ଅଘଟଣ ହୁଏ, ଆମର ଏଠାକୁ ଆସିବାର ସମସ୍ତ ଉଦ୍ଦେଶ୍ୟ ଶେଷ ମୁହୂର୍ତ୍ତରେ ଭଣ୍ଡୁର ହୋଇଯିବ। ଏଣୁ ସବୁ ସମୟରେ ସତର୍କ ହୋଇ ରହିବାକୁ ହୁଏ। ଏହି ସବୁ କଥା ଚିନ୍ତା କରି ଆମ ଦଳର ବୟୋଜ୍ୟୋଷ୍ଠ ବୈଜ୍ଞାନିକ ଡକଟର ମୁଖାର୍ଜିଙ୍କୁ ଡକେଇଲି। ଡକ୍ଟର ମୁଖାର୍ଜି ଆସିଲେ। ଅସମୟରେ ଡକେଇ ଥିବାରୁ ତାଙ୍କ ମୁହଁରେ ଅସନ୍ତୋଷ। କହିଲି, ଦୁଃଖିତ ଡକଟର ମୁଖାର୍ଜି, ଆପଣଙ୍କ ସହ ପରାମର୍ଶ ନ କରି କୌଣସି ସିଦ୍ଧାନ୍ତ ନେଇ ପାରୁ ନଥିଲି। ଡକ୍‌ଟର ମୁଖାର୍ଜି କିଛି କହିଲେ ନାହିଁ।

ର୍‌ୟାଡର ସ୍କ୍ରିନ୍‌ରେ ବସ୍ତୁଟିକୁ କିଛି ସମୟ ଅନେଇ ରହିଲେ ତା'ପରେ ଥଟ୍ଟାଳିଆ ଢଙ୍ଗରେ କହିଲେ, 'ଜାପାନୀମାନେ ମୃତ ଶରୀରକୁ କବର ଦେବାର ସ୍ଥାନ ନ ପାଇ ମହାକାଶରେ ଛାଡି ଦେଉଛନ୍ତି ପରା?

— ସେହିପରି କଥା ଶୁଣିଥିଲି।

— ତେବେ ଏଇଟା ସେଇ କଫିନ ଭିତରୁ ଗୋଟିଏ।

— କଫିନ୍ ହୋଇଥିଲେ, ତା' ଉପରେ ଆଲୋକ କାହିଁକି ବାହାରିବ? ତା'ଛଡା ପ୍ରୋପେଲସିଭ ଜେଟ ନଥିଲେ କଫିନଟା ଏତେ ବାଟ ଆସିବ କିପରି?

ଓହୋ, କହି ଡକ୍ଟର ମୁଖାର୍ଜି ହସିଲେ ଇଜିପ୍ଟର ଫାରୋମାନେ ନିଜ ମୃତଶରୀର ପାଇଁ ପିରାମିଡ୍ କରୁଥିଲେ, ଶରୀର ପାଇଁ ଦାସଦାସୀ ଖାଦ୍ୟଦ୍ରବ୍ୟ ରଖୁଥିଲେ। ଏ କଫିନଟି ସେମିତି କେହି ପଇସାବାଲା ଜାପାନୀର। ତେବେ ଚିନ୍ତାର କଣ ଅଛି—। ଜିନିଷଟା କଣ ଦେଖାଯାଉ।

କ୍ଲିବ୍ରମ୍ୟାନ ଆମ ସିପ୍‌ରୁ ଗୋଟିଏ ସର୍ଚ୍ଚର ରୋବଟକୁ ପଠେଇଦେଲେ କଫିନଟିକୁ ଘେନି ଆଣିବାପାଇଁ। ଆମେ ଅପେକ୍ଷା କଲୁ। କିଛି ସମୟ ପରେ ରୋବଟ କଫିନଟିକୁ କମ୍ୟୁନିକେସନ୍ ଡେକ ଉପରେ ଆଣି ଥୋଇଲା।

ଗୋଟିଏ ସାଧାରଣ କଫିନ ବାକ୍ସଠୁ ଆକାରରେ ଆଉ ଟିକିଏ ବଡ ଆଲୁମ୍ୟୁନିୟମ ବା ସେଇ ଜାତୀୟ କୌଣସି ଯୌଗ ଦ୍ୱାରା ଗଠିତ। ବାକ୍ସଟି ଉପରେ ରହିଛି କେତେଗୁଡିଏ ସୋଲାର ସେଲ। ବାକ୍ସଟି କଡକୁ ଲାଗିଛି ଦୁଇଟି ଲମ୍ବ ଧରଣର ସିଲିଣ୍ଡର। ଦେଖି ଯାହା ମନେ ହେଉଛି, ସେଥିରେ ଆଉ ଗ୍ୟାସ ନାହିଁ। ଗ୍ୟାସ ସରିଯିବାରୁ କୌଣସି ନିର୍ଦ୍ଦିଷ୍ଟ ଦିଗକୁ ଯାଇ ନପାରି ବାକ୍ସଟି ମହାକାଶରେ ଏଣେ ତେଣେ ବୁଲୁଛି। ବାକ୍ସଟିରେ ଯାହା ଆମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା, ତାହା ହେଉଛି ବାକ୍ସ ଉପରେ ଅଙ୍କା ହୋଇଥିବା 'ସ୍ୱସ୍ତିକ' ଚିହ୍ନଟିଏ। ଏ ଚିହ୍ନ ଦ୍ୱିତୀୟ ବିଶ୍ୱ ଯୁଦ୍ଧବେଳେ ହିଟଲର ଜର୍ମାନ ସୈନ୍ୟମାନଙ୍କ ପାଇଁ ବାଛିଥିଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିବାର ପଚାଶ ବର୍ଷ ପୂରି ଗଲାଣି। ଏବେ ମୁଁ ଜାଣିବାରେ ଜର୍ମାନମାନେ ଆଉ ସ୍ୱସ୍ତିକ ଚିହ୍ନ ବ୍ୟବହାର କରୁ ନାହାନ୍ତି। ତେବେ ବାକ୍ସଟି କଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ପୃଥିବୀ ବାହାରକୁ ଆସିଥିଲା? ତାପରେ ପଚାଶ ବର୍ଷ ହେଲା ମହାକାଶରେ ଭାସୁଛି? ଏହା କିଭଳି ସମ୍ଭବ? ତେବେ ବାକ୍ସ ଭିତରେ କଣ ଅଛି ନ ଦେଖିଲା ଯାଏ ସଠିକ କିଛି କହି ହେବ ନାହିଁ।

ବାକ୍ସଟି ଏତେ ସୁନ୍ଦର ଭାବରେ ବନ୍ଦ ହୋଇଛି ଯେ ତାର ମୁହଁଟି ଖୋଜି ପାଇବାକୁ ଆମକୁ କିଛି ସମୟ ଲାଗିଗଲା। ପରେ ମୁହଁ ପାଖରେ ଥିବା ଗୋଟିଏ ଲିଭରରେ ଟିକିଏ ଚାପ ଦେଲାରୁ ବାକ୍ସଟି ଖୋଲିଗଲା। ଆମେ ନିର୍ବାକ ବିସ୍ମୟରେ ଚାହିଁ ରହିଲୁ ଖୋଲା ବାକ୍ସଟିକୁ। ତାଜା ତଟକା ମଣିଷଟିଏ ଶୋଇଛି। ହାତ ଦୁଇଟି ଛାତି ଉପରେ ମୋଡା। ପାଉଁଶିଆ ରଙ୍ଗର ପ୍ରେସରାଇଜଡ୍ ସ୍ୟୁଟ ପିନ୍ଧିଛନ୍ତି। କାହାରି ପାଟିରୁ କଥା ବାହାରୁ ନଥାଏ। କେବଳ ଡକ୍ଟର ମୁଖାର୍ଜି ବିଡ୍ ବିଡ୍ ହୋଇ କହୁଥାନ୍ତି ସାର୍! ସାର୍! କିଛି ସମୟ ପରେ ସମ୍ବିତ୍ ଫେରି ପାଇ କହିଲେ, 'ମୋ ପ୍ରଫେସର! ପ୍ରଫେସର ବିଅରମ୍ୟାନ୍।'

ଡକଟର ମୁଖାର୍ଜିଙ୍କଠାରୁ ପ୍ରଫେସର ବିଅରମ୍ୟାନଙ୍କ କଥା ଶୁଣିଛି। ହାଇଡେଲବର୍ଗ ଇଉନଭରସିଟିରେ ବାୟୋସାଇନ୍ସ ଡିପାର୍ଟମେଣ୍ଟରେ ପ୍ରଫେସର ଥିଲେ। ଆଜି ଡକଟର ମୁଖାର୍ଜି ଯେଉଁ କାମ ପାଇଁ ବିଖ୍ୟାତ ସେଇ କାମ ପ୍ରଥମେ ପ୍ରଫେସର ବିଅରମ୍ୟାନ ଆରମ୍ଭ କରିଥିଲେ। ଉଚ୍ଚତର ପ୍ରାଣୀମାନଙ୍କୁ କିଭଳି ବର୍ଷ ବର୍ଷ ପାଇଁ ଗାଢ଼ ନିଦରେ ଶୁଆଇ ହେବ ତାର ବିଭିନ୍ନ ଉପାୟ ସେ ଆବିଷ୍କାର କରିଥିଲେ। ତେବେ ଅଭିମନ୍ୟୁର ବ୍ୟୁହ ପ୍ରବେଶ କରିବାର ଉପାୟ ଜାଣିଲା ପରି ବିଅରମ୍ୟାନ ଉଚ୍ଚତର ପ୍ରାଣୀମାନଙ୍କୁ ସପେନଡେଡ୍ ଆନିମେସନରେ ଶୁଆଇ ଦେଇ ପାରୁଥିଲେ। ସେମାନଙ୍କ ଜୀବନଶକ୍ତି ପୁନର୍ବାର ଫେରେଇ ଆଣିବାର ଉପାୟ ସେ ଜାଣି ନଥିଲେ ବିଅରମାନଙ୍କ ଏହି କାମରେ ଡକଟର ମୁଖାର୍ଜି ତାଙ୍କର ସହଯୋଗୀ ଥିଲେ। ତାପରେ ଦିନେ ହଠାତ୍ ପ୍ରଫେସର ବିଅରମ୍ୟାନ ହଜିଗଲେ— କିନ୍ତୁ ସେ ତ ପରର କଥା

ଜର୍ମାନୀରେ ସେ ସମୟରେ ଭୀଷଣ ଅସ୍ଥିରତା। ଯୁଦ୍ଧର ପ୍ରସ୍ତୁତି ଚାଲିଥାଏ। ଷୋହଳ ବର୍ଷରୁ ଊର୍ଦ୍ଧ୍ୱ ପୁରୁଷ ସବୁ ସୈନ୍ୟ ଦଳରେ ଭିଡୁ ଥାନ୍ତି। ହିଟଲର ନିଜେ ସୈନ୍ୟମାନଙ୍କ କୁଚକୱାର ପରିଦର୍ଶନ କରୁଥାନ୍ତି। ଏଇଭଳି ଏକ ସମୟରେ ଭାରତରୁ ଡକଟର ମୁଖାର୍ଜି ବିଅରମାନଙ୍କ ଲ୍ୟାବରେଟୋରୀରେ ଯୋଗ ଦେଲେ। ଏହାର କେଇଟା ଦିନ ପରେ ଯୁଦ୍ଧ ଲାଗି ଗଲା। ମୁଖାର୍ଜି ଆଉ ଦେଶକୁ ଫେରି ପାରିଲେ ନାହିଁ।

ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ଜର୍ମାନ ଗୋଟିଏ ପରେ ଗୋଟିଏ ରାଜ୍ୟ ଜୟ କରୁଥାଏ। ସାଙ୍ଗକୁ ଇହୁଦୀ (ଜିଉ) ମାନଙ୍କ ନିଧନ। ଏହି ସମୟରେ ପ୍ରଫେସର ବିଅରମ୍ୟାନଙ୍କୁ ଜର୍ମାନୀର ଗୁପ୍ତ ସାମରୀକ ବିଜ୍ଞାନଗାରରେ ଯୋଗ ଦେବାକୁ ପଡିଲା। ଶୁଣାଯାଏ, ଯେଉଁ ଏନଜାଇମ୍ ସାହାଯ୍ୟରେ ସେ ମାଙ୍କଡ ମାନଙ୍କୁ ଗାଢ଼ ନିଦରେ ଶୁଆ ଦେଇ ପାରୁଥିଲେ ସେଇ ଏନଜାଇମ ସେ କେତେଜଣ ଜିଉମାନଙ୍କ ଉପରେ ମଧ୍ୟ ପ୍ରୟୋଗ କରିଥିଲେ। ଏକଥା ପରେ ଡକଟର ମୁଖାର୍ଜି, ବିଅରମ୍ୟାନଙ୍କ ନୋଟ ବହିରୁ ପାଇଥିଲେ।

ଯୁଦ୍ଧର ମୋଡ ହଠାତ୍ ବଦଳି ଗଲା। ମିଳିତ ଶକ୍ତିର ଆକ୍ରମଣରେ ଜର୍ମାନ ପରାଭୂତ ହେଲା। ଜର୍ମାନ ଅସହାୟ ହୋଇପଡିଲା। କିଏ କୁଆଡେ ହଜିଗଲେ - ତାର ପତ୍ତା କେହି ପାଇଲେ ନାହିଁ।

ଦିନେ ଲ୍ୟାବୋରେଟୋରୀକୁ ଯାଇ ଡକ୍ଟର ମୁଖାର୍ଜି ନିଜ ଟେବୁଲ ଉପରେ ପ୍ରଫେସର ବିଅରମ୍ୟାନଙ୍କ ଚିଠିଟିଏ ପାଇଲେ। ଛୋଟ ଚିଠି। ତରତର ହୋଇ ଲେଖା ହୋଇଛି। ... ମୁଁ ଯାଉଛି। ନୋଟବହିଟି ଯେପରି ଅନ୍ୟ ହାତରେ ନ ପଡେ। ତାପରେ ପ୍ରଫେସର ବିଅରମ୍ୟାନ ହଜିଗଲେ। ଡକଟର ମୁଖାର୍ଜି ରହିଗଲେ ପ୍ରଫେସରଙ୍କ ଚୌକିରେ।

ବିହ୍ୱଳତା କଟିଯିବା ପରେ, ଡକଟର ମୁଖାର୍ଜି ନଇଁ ପଡି ପ୍ରଫେସର ବିଅରମ୍ୟାନଙ୍କ ଆଖି ପତା ଓଲଟେଇ ଦେଖିଲେ, ପରେ ଅନ୍ୟ କେତୋଟି ପ୍ରକାର ପରୀକ୍ଷା କରି କହିଲେ ପ୍ରଫେସର ସସପେନ୍‌ଡେଡ ଆନିମେସନରେ ଅଛନ୍ତି। ଆମେ ସମସ୍ତେ ମିଳିମିଶି ପ୍ରଫେସରଙ୍କୁ ଲ୍ୟାବରେଟୋରୀ ଭିତରକୁ ନେଇ ଆସିଲୁ। ଗୋଟିଏ ଅକ୍ସିଜେନ୍ ମାସ୍କ ବିୟରମ୍ୟାନ୍‌ଙ୍କୁ ପିନ୍ଧାଇ ଦିଆଗଲା। ଡକଟର ମୁଖାର୍ଜି ତାଙ୍କୁ ଦୁଇ ତିନୋଟି ଇନଜେକସନ୍ ଦେଲେ। ବାର ଚଉଦ ଘଣ୍ଟା ଚେଷ୍ଟା ପରେ ବିଅରମ୍ୟାନଙ୍କ ଛାତି ଉଠପଡ ହେଲା; ତା ପରେ ଆଖି ଡୋଳାର ଘୂର୍ଣ୍ଣନ ହେଲା। ଡକଟର ନାଡି ଦେଖୁଥାନ୍ତି ପରେ ପରେ ବ୍ଲଡପ୍ରେସର ଦେଖିଲେ। ଏଥର ତାଙ୍କ ମୁହଁରେ ହସ ଦେଖା ଗଲା। ଗାଢ଼ ନିଦରୁ ଉଠିଲା ପରି ବିଅରମ୍ୟାନ ଆଖି ଖୋଲିଲେ। ବାସ୍ତବରୁ ବୋଧ କରିବାରେ ତାଙ୍କୁ କିଛି ସମୟ ଲାଗିଲା। ମହାକାଶ ଭିତରର ପରିବେଶ ତାଙ୍କୁ ଘେରି ରହିଥିବା ମୁହଁଗୁଡାକୁ କିଛି ସମୟ ବଲବଲ କରି ଅନେଇ ରହିଲେ। ଷାଠିଏ ବର୍ଷ ତଳର ଯୁବକ ଛାତ୍ର ମୁଖାର୍ଜି ଏବେ ପ୍ରୌଢ଼। ଆ୍ୟାଣ୍ଟି ଏଜିଂ ଥେରାପି ବଳରେ ବାର୍ଦ୍ଧକ୍ୟ ଯଦିଓ ତାଙ୍କୁ ଗ୍ରାସ କରିନାହିଁ, ତଥାପି ମୁହଁରେ ସେଇ ଯୁବକ ସୁଲଭ ଔଜ୍ଜଲ୍ୟ ନାହିଁ। ଚିହ୍ନିବାରେ ତାଙ୍କର ଅସୁବିଧା ହେଲା ନାହିଁ। କରମର୍ଦ୍ଦନ ପାଇଁ ସେ ପ୍ରଥମେ ଡକଟର ମୁଖାର୍ଜିଙ୍କ ଆଡକୁ ହାତ ବଢ଼େଇଲେ। ଡକଟର ମୁଖାର୍ଜି ଆମ ସମସ୍ତଙ୍କୁ ପରିଚୟ କରାଇ ଦେଲେ। ଶୁଭେଚ୍ଛା ବିନିମୟ ପରେ ପ୍ରଫେସର ବିଅରମ୍ୟାନ ପ୍ରଥମ ପ୍ରଶ୍ନ କଲେ – ''ଯୁଦ୍ଧ ସରିଗଲାଣି –?'' କି ଆକୁଳ ସେ ପ୍ରଶ୍ନ। ଉତ୍ତର ଶୁଣି ଦୀର୍ଘ ନିଶ୍ୱାସଟିଏ ଛାଡିଲେ। ତାପରେ କେତେ ପ୍ରଶ୍ନ। ବେଶ କିଛି ସମୟ ଲାଗିଲା; ବିଅରମ୍ୟାନଙ୍କ ସମସ୍ତ ପ୍ରଶ୍ନର ଉତ୍ତର ଦେବାରେ ଶେଷରେ ପ୍ରଫେସର ବିଅରମ୍ୟାନ ଡକଟର ମୁଖାର୍ଜିଙ୍କୁ ପ୍ରଶ୍ନ କଲେ ତାଙ୍କର ଅସମାପ୍ତ ଏକ୍ସପେରିମେଣ୍ଟ ସମ୍ବନ୍ଧରେ। ଡକଟର ମୁଖାର୍ଜିଙ୍କ ଠାରୁ ସବୁ ଶୁଣି ତାଙ୍କ ମୁହଁ ଖୁସିରେ ପୂରି ଉଠିଲା। ଯୋଗ୍ୟ ଛାତ୍ରଠାରୁ ଗୁରୁ ଆଉ କଣ ଆଶା କରିପାରେ ?

ପରଦିନ ଡିନର ଟେବୁଲରେ ଆମେ ସମସ୍ତେ ଏକାଠି ବସିଥିବୁ - ପ୍ରଫେସର ବିଅରମ୍ୟାନଙ୍କୁ ପ୍ରଶ୍ନ କଲି ଚାଳିଶ ଦଶକରେ ଆପଣ ମହାକାଶକୁ ଆସିଲେ କିପରି ?

କିଛି ସମୟ ଚୁପ ରହି ପ୍ରଫେସର ବିଅରମ୍ୟାନ କହିଲେ, ଯୁଦ୍ଧ ବେଳର ସବୁ କଥା କହିଲେ ତୁମେ ବିଶ୍ୱାସ କରିବ ନାହିଁ। ତେବେ ଗୋଟିଏ କଥା ଯାହା ପାଇଁ ଯୁଦ୍ଧ ସେ ହିଟଲରକୁ ତୁମେ ଘୃଣା କର ବା ତା'ର ସମାଲୋଚନା କର ତାର ଦୂରଦୃଷ୍ଟିକୁ ତୁମେ ଅସ୍ୱୀକାର କରି ପାରିବ ନାହିଁ। ଯେପରି ଅସ୍ୱୀକାର କରି ହେବ ନାହିଁ ତାର ଦେଶ ଭକ୍ତିକୁ। ୧୯୪୦ରେ ବସି ସେ ୨୦୪୦ କଥା ଚିନ୍ତା କରିପାରୁଥିଲା। ସେଦିନ ମୋର ଏକ୍ସପେରିମେଣ୍ଟ

କଥା ଶୁଣି କହିଥିଲେ କିଛି ପୁରୁଷ ଓ ସ୍ତ୍ରୀଙ୍କୁ ସସପେନଡେଡ୍ ଆନିମେସନରେ ରଖି ପୃଥିବୀ ବାହାରକୁ ପଠେଇଦିଅ। ସେମାନେ ଅନ୍ୟ ଗ୍ରହରେ ମଣିଷର ମଞ୍ଜି ବୁଣିବେ। ସେଇ ମୁତାବକ କାମ ହେଲା। ଆମେ କିଛି ପୁରୁଷ ଓ ସ୍ତ୍ରୀଙ୍କୁ ସସପେନଡେଡ୍ ଆନିମେସନରେ ରଖି ପୃଥିବୀ ବାହାରକୁ ପଠେଇଦେଲୁ। ଏହାର କିଛି ଦିନ ପରେ ମିତ୍ର ଶକ୍ତି ପାଖରେ ଜର୍ମାନ ପଛଘୁଞ୍ଚା ଦେଲା। ଦିନରାତି ବର୍ଲିନ ଉପରେ ବୋମାମାଡ ହେଉଥାଏ। ମୁଁ ହୁଏତ ଯୁଦ୍ଧବନ୍ଦୀ ହୋଇ ସାଇବେରିଆ ବା ଅନ୍ୟ କେଉଁଠି ଘଣା ପେଲୁଥାନ୍ତି, ମାତ୍ର ଈଶ୍ୱରଙ୍କ ଇଚ୍ଛା ଥିଲା ଅନ୍ୟ ପ୍ରକାରର। ମୋର କେତେଜଣ ବନ୍ଧୁ ମୋ ନିଜ ଔଷଧରେ ମୋତେ ଶୁଆଇ ଦେଲେ, ତା ପରେ ପଠେଇ ଦେଲେ ପୃଥିବୀ ବାହାରକୁ।

ଆଉ ଦିନେ, ଆମେ ଏକବିଂଶ ଶତାବ୍ଦୀର ପୃଥିବୀ ସମ୍ବନ୍ଧରେ କଥାଭାଷା ହେଉଛୁ। ପ୍ରଫେସର ବିଅରମ୍ୟାନ ଆମ କଥା ଶୁଣୁଥାନ୍ତି - ବେଳେ ବେଳେ ଆଶ୍ଚର୍ଯ୍ୟ ହୋଇ ପଚାରୁଥାନ୍ତି ସତରେ ଏମିତି ହେଲାଣି। କହିଲି ଯେଉଁ ଜର୍ମାନକୁ ଆପଣ ଛାଡି ଆସିଥିଲେ, ଦେଖିବେ ସେଠାରେ କି ବିରାଟ ପରିବର୍ତ୍ତନ। ଯୁଦ୍ଧ ପରେ ଜର୍ମାନ ମଝିରେ ଗୋଟିଏ ପାଚେରୀ ହୋଇଥିଲା - ତାହା ଭଙ୍ଗା ହୋଇଗଲାଣି। ଆଉ କେତୋଟା ଦିନରେ ହୁଏତ ସମଗ୍ର ୟୁରୋପ ଏକ ହୋଇଯିବ।

ଆମଠୁ ସବୁ କଥା ଶୁଣି ସାରିଲା ପରେ କେଇଟା ଦିନ ପ୍ରଫେସର ବିଅରମ୍ୟାନ ନିଜ ଭିତରେ ରହିଲେ। ସବୁବେଳେ କଣ ଭାବନ୍ତି। ଭୀଷଣ ଚୁପଚାପ। ଡକଟର ମୁଖାର୍ଜି ତାଙ୍କ ନୂତନ ଏକ୍ସପେରିମେଣ୍ଟ କଥା କହିଲେ ସେଥିରେ ମଧ୍ୟ ବିଶେଷ ଉତ୍ସାହ ଦେଖେଇଲେ ନାହିଁ। ହୁଏତ ନିଜ ଭିତରେ ହିସାବ ନିକାଶ କରୁଥିଲେ।

ଆମର ଫେରିବା ଦିନ ଘନେଇ ଆସିଲା। ଖବର ମିଳିଲା ପୃଥିବୀରୁ ସ୍ପେସ ସଟଲ ବାହାରି ଗଲାଣି। ବାଟରେ ଦୁଇଟା ଷ୍ଟେସନରୁ ପାସେଞ୍ଜର ନେବ। ସମସ୍ତଙ୍କ ମନରେ ଘରକୁ ବାହୁଡିବାର ଉଦ୍ଦୀପନା। ପ୍ରଫେସର ବିଅରମ୍ୟାନ କିନ୍ତୁ ଆମ ଆନନ୍ଦରେ ସାମିଲ ହୋଇ ପାରୁନଥାନ୍ତି। ଦିନେ ମୋତେ ଓ ଡକଟର ମୁଖାର୍ଜିଙ୍କୁ ଡାକି କହିଲେ, "ମୁଁ ଆଉ ପୃଥିବୀକୁ ଫେରିବି ନାହିଁ।" ଆମେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଅନେଇଲୁ। ପଚାରିଲେ କାହିଁକି ?

ଗମ୍ଭୀର ହୋଇ ପ୍ରଫେସର ବିଅରମ୍ୟାନ ଉଦାସ କଣ୍ଠରେ କହିଲେ, ନୂତନ ପୃଥିବୀରେ ମୁଁ ହୋଇଯିବି ଏକ ପୁରାତନ ଦର୍ଶନୀୟ ବସ୍ତୁ ବିଶେଷ, ମୋର ସମୟ ଚାଲିଯାଇଛି। ପୃଥିବୀରେ ପ୍ରତ୍ୟେକ ମଣିଷ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ରହିଛି। ସେତିକି ସମୟ ମଧ୍ୟରେ ତାର ଉପସ୍ଥିତି ସମସ୍ତେ ସହ୍ୟ କରିବେ। ଅସମୟରେ ସେ ହୋଇଯିବ ଫାଲତୁ। ଆମେ ଚୁପଚାପ ତାଙ୍କ

କଥା ଶୁଣୁଥାଉ। ମୋ ଆଡକୁ ଅନେଇ କହିଲେ,, କ୍ୟାପଟେନ, ପୁରାତନର ସ୍ମୃତି ମଧୁର ମାତ୍ର ପୁରାତନର ଉପସ୍ଥିତି ସୁଖକର ନୁହେଁ।

ଡକଟର ମୁଖାର୍ଜି ପଚାରିଲେ, ତେବେ ଆପଣ –

ହସିକରି ପ୍ରଫେସର ବିଅରମ୍ୟାନ କହିଲେ, ମୋତେ ପୁଣି ଶୁଆଇ ଦିଅ –। ମୋର ବିଶ୍ୱାସ ଯୁଦ୍ଧ ପୂର୍ବରୁ ଯେଉଁ ନାରୀ ପୁରୁଷଙ୍କୁ ଆମେ ସସପେନଡେଡ ଆନିମେସନରେ ପୃଥିବୀ ବାହାରକୁ ପଠେଇଥିଲୁ, ସେମାନେ ଅନ୍ୟ ନକ୍ଷତ୍ରଲୋକରେ ସଂସାର ପାରି ସାରିଥିବେ। ମୁଖାର୍ଜି ସେମାନଙ୍କ ବଂଶଧରର ହାତରେ ମୋର ଏହି ଆପାତତ କଫିନର ଦ୍ୱାର ଖୋଲିବାର ଦାୟିତ୍ୱ ଛାଡି ଦିଆଯାଉ। ଏହା ବୋଧହୁଏ ସବୁଠାରୁ ଭଲ ହେବ ନା କଣ କହୁଛ ?''



# କଣ୍ଟ୍ୟଲେଖା

ପିଲାଦିନେ ଆମ ଘର ପାଖରେ ଜଣେ ଖ୍ୟାତିମାନ ଲେଖକ ରହୁଥିଲେ। ତାଙ୍କ ସହିତ ମୋର ଯାହା ପରିଚୟ, ତାହା ଥିଲା ଏକ-ତରଫା। ସେତେବେଳେ ତାଙ୍କ ପାଖକୁ ଯାଇ ଆଳାପ କରିବାର ସାହସ ହୋଇନଥାଏ। ତାଙ୍କର ଫଟୋ ଖବରକାଗଜରେ ଦେଖେ, ସଭାସମିତିରେ ତାଙ୍କ ଜ୍ଞାନଗର୍ଭ ଭାଷଣ ଶୁଣେ। ପ୍ରତିଦିନ ତାଙ୍କ ଘରେ କେତେ ଲୋକ ଆସନ୍ତି। ଏଇ ସବୁ ଦେଖି ପିଲାଦିନରୁ ମୁଁ ଲେଖକ ହେବାକୁ ସ୍ଥିର କରିଥିଲି।

ମୋ ଜଣେ ବନ୍ଧୁର ଆଦର୍ଶ ସୁନୀଲ ଗାଭାସ୍କର। ସିଏ ସକାଳୁ ଗଜା ବୁଟ ଖାଇ ଦୁଇ ମାଇଲ ଦୌଡେ। ଖରା ବର୍ଷାରେ ବ୍ୟାଟନେଇ ପଡିଆକୁ ଯାଏ। ଟି.ଭି.ରେ ଗାଭାସକର ଖେଳ ଥିଲେ ସେଦିନ ସିଏ ଘରୁ ବାହାରେ ନାହିଁ। କଲେଜ ଟିମରେ ଖେଳିଲାବେଳେ ଆମେ ତା ନାଁ ଦେଇଥିଲୁ ଗାଭାସ୍କର। ସେତିକିରେ ତା ଛାତି କୁଣ୍ଢେ ମୋଟ।

ମୁଁ ଥରେ କଲେଜ ମ୍ୟାଗାଜିନକୁ ଲେଖାଟିଏ ଦେଲି। ଲୋକେ ପଢ଼ିଲେ - କହିଲେ ଲେଖାଟା ଅମୁକ ଲେଖକଙ୍କ ପରି ହୋଇଛି। ମୋର ମୌଳିକତା ନାହିଁ। ଭାରି ଅଡୁଆରେ ପଡିଲି, କ'ଣ କରିବି? ଦିନେ ନା ଦିନେ ଲେଖକ ହେବାକୁ ହିଁ ହେବ। ଜ୍ଞାନପୀଠ ନ ହେଲା, ଅନ୍ତତଃ ସାହିତ୍ୟ ଏକାଡେମୀଟା ମିଳିବ। ପୁରସ୍କାର ନେଲାବେଳେ ମନ୍ତବ୍ୟଟା ଦେଇଦେବି ଏଇଟା ମୋତେ ବହୁତ ଆଗରୁ ମିଳିବାର ଥିଲା। ଭାବଟା ଏଇପରି - ପୁରସ୍କାର ନେଇ ମୁଁ ସାହିତ୍ୟ ଏକାଡେମୀକୁ ଉତ୍ସାହିତ କରୁଛି। ତା'ପରେ ମୋତେ ପାଏ କିଏ! ଆଜି ଏଠି ସଭାପତି କାଲି ସେଠି ମୁଖ୍ୟ ବକ୍ତା। ପାଣ୍ଡୁଲିପି ପାଇଁ ମୋ ଘରେ ପ୍ରକାଶକଙ୍କ ଭିଡ।

କିନ୍ତୁ ଲେଖକ ହେଲେ ମୋତେ କଣ କରିବାକୁ ହେବ ଜଣା ନାହିଁ। ଥରେ ଲେଖକଙ୍କର ସାନ ପୁଅକୁ ବାଟରେ ଧରିଲି। ଫୁସୁଲାଫୁସୁଲି କରି

ପଚାରିଲି ବାପା କଣ ଖାଆନ୍ତି, କେତେବେଳେ ଉଠନ୍ତି, ଜୋରରେ କଥା କୁହନ୍ତି ନା ଆସ୍ତେ, ସକାଳେ ପଢ଼ନ୍ତି ନା ରାତିରେ । ମୋଟ କଥା ତାଙ୍କର ହାବଭାବ ଚାଲିଚଳନ ଜଣେ ପକ୍କା ଡିଟେକଟିଭ ପରି ବୁଝି ନେଲି; କିନ୍ତୁ ହେଲେ କଣ ହେବ, ଲେଖକ ଆମ ପରି ଖୁବ୍ ସାଧାରଣ । ଭାତ ଡାଲି ଖାଆନ୍ତି । ଘରେ ଖାଲି ଦେହରେ ଲୁଙ୍ଗି ପିନ୍ଧନ୍ତି । ସବୁ କିଛି ସାଧାରଣ । ତେବେ ଅସାଧାରଣ ହେଲେ କିପରି ?

ବଡ ଚିନ୍ତାରେ ପଡ଼ିଲି । ମନ କଥା ଜଣେ ବନ୍ଧୁକୁ କହିଲି । ବନ୍ଧୁ କହିଲା, ‘‘ଲେଖକ ହେବା ଏତେ ସହଜ ନୁହେଁ । ଲେଖାଲେଖି ଗୋଟାଏ Spontaneous sprit; ଲେଖକ କଲମ ଧରିଲେ ଲେଖା ମନକୁ ମନ ବାହାରେ । ସୃଜନୀ ସାହିତ୍ୟ କ'ଣ ଏମିତି ସେମିତି ହୁଏ । ଗୋଟିଏ ଲେଖାକୁ ଦୁଇ ଚାରିଥର ଲେଖିବାକୁ ହୁଏ । ତା'ଛଡା ଗଭୀର ମନନ ଦରକାର । ବନ୍ଧୁ କଥା ଶୁଣି ମନଟା ଦବିଗଲା । ଯଦି ସତରେ ସେଇଆ, ତେବେ ? କେତେ ଥର ତ କାଗଜ କଲମ ନେଇ ବସିଛି । ମନକୁ ମନ ଲେଖାତ କେବେ ତ ବାହାରି ନି । ଘଣ୍ଟା ପରେ ଘଣ୍ଟା ଟେବୁଲ ପାଖରେ ବସିଛି । ଘରେ ଭଲ ଧୂପ ଜଳେଇଛି । ମନୋନିବେଶ ପାଇଁ ‘ରାମ’ ନାମ ଜପିଛି । ଦୁଇ ତିନି କପ ଚା ପିଇଛି । ମୁଡ୍ ଆଣିବା ପାଇଁ ଟେପରେ ସିତାର ବଜେଇଛି । ତା' ସତ୍ତ୍ୱେ କଲମରୁ ମନକୁ ମନ ଲେଖା ବାହାରି ନାହିଁ । ଯାହା ବାହାରିଛି ଖଣ୍ଡ ଖଣ୍ଡ ଗାର, ମଣିଷ ମୁଣ୍ଡ, ଗଛ, ପାହାଡ ସୂର୍ଯ୍ୟୋଦୟ, ଏମିତି ଆବୁଡୁ ଜାବୁଡୁ କେତେ କଣ । କଲମଟା କପାଳରେ ଠୁକ ଠୁକ କରିଛି, କାନ କୁଣ୍ଡେଇଛି ତେବେ ବି ଲେଖା ହୁଏ ନି । ସବୁଠୁ ବଡ ସମସ୍ୟା କ'ଣ ନେଇ ଲେଖିବି ? ବଂଧୁ ବାନ୍ଧବ ପରିଚିତମାନଙ୍କ କଥା ? ସେମାନଙ୍କର ଡାଲି ଭାତ ଜୀବନ ନେଇ କ'ଣ ଗଳ୍ପ ଉପନ୍ୟାସ ହୁଏ ।

ଜଣେ ବନ୍ଧୁ ପରାମର୍ଶ ଦେଲେ, ଲେଖିବାକୁ ହେଲେ ଅଭିଜ୍ଞତା ଦରକାର । ଅନ୍ତର୍ଦୃଷ୍ଟି ଦରକାର । ମଣିଷ ମୁହଁକୁ ଅନେଇ ତା ଭିତରଟା ଏକସରେ ଆଖିରେ ଦେଖିବା ଦରକାର । ପ୍ରତ୍ୟେକଙ୍କ କପାଳରେ ବଳି ରେଖା - ଗୋଟାଏ ଗୋଟାଏ ଉପନ୍ୟାସ ।

‘ଅଭିଜ୍ଞତା ଦରକାର’ ସେଦିନ ଖବରକାଗଜରେ ଜଣେ ସାହେବଙ୍କ ଫଟୋ ବାହାରି ଥାଏ । ଓଡିଶାକୁ ଆସିଥାନ୍ତି । ହାତୀ ପିଠିରେ ବଣ ଜଙ୍ଗଲ ଗାଁ ଗଣ୍ଡା ବୁଲି ଅଭିଜ୍ଞତା ସଂଚୟ କରିବେ । ସେଥିପାଇଁ ଲକ୍ଷେ ତିରିଶ ହଜାର ଟଙ୍କା ଦେଇ ସୋନପୁରରୁ ହାତୀଟାଏ କିଣିଛନ୍ତି । ମୋ ପାଖରେ ଏତେ ପଇସା କାହିଁ । ଠିକ୍ କଲି ସାଇକେଲରେ ବୁଲି ଅଭିଜ୍ଞତା ଅର୍ଜନ କରିବି । ଥରେ ଭୁବନେଶ୍ୱରରୁ କୋଣାର୍କ ସାଇକେଲରେ ଗଲି । ପିପିଲିରେ ପଇଡ଼, ନିମାପଡ଼ାରେ ଛେନାପୋଡ଼ ଖାଇ ପାହାନ୍ତିଆରେ କୋଣାର୍କରେ ପହଞ୍ଚିଲି । ସୂର୍ଯ୍ୟ

ଉଠୁଥାଏ, ମନ୍ଦିର ସାମ୍ନା ବାଲିରେ ବସିଲି, କେତେ କଥା ମନକୁ ଛୁଟିଲା। ନରସିଂହ ଦେବ, ବାରଶ ବଢ଼େଇ, ଧରମା, କେତେକଣ। ସଞ୍ଜ ଗଡ଼ିଲା। କିନ୍ତୁ ସେପରି ଅସାଧାରଣ ଚରିତ୍ର ତ ଭେଟିଲି ନାହିଁ- ଯାହାକୁ ନେଇ ଗପ ଲେଖି ପାରିବି। ସେପରି sensational ଘଟଣା ବି ଘଟିଲା ନାହିଁ। ମନଟା ଭାଙ୍ଗି ଗଲା।

ଦିନେ ଜର୍ମାନରୁ ବନ୍ଧୁଠୁ ଚିଠିଟିଏ ପାଇଲି। ଦେଶକୁ ଫେରୁଛି। ମୋର କଣ ଦରକାର ଲେଖିଲେ ଆଣି ଦେବ। ବନ୍ଧୁଙ୍କୁ ମୋ ଲେଖକ ହେବାର ବାସନା ଓ ବନ୍ଧନ ଜଣେଇ ଚିଠିଟିଏ ଲେଖିଲି। କିଛିଦିନ ପରେ ଉତ୍ତର ଆସିଲା - ସେଠି ଗୋଟାଏ ନୂଆ ମଡେଲ୍ କମ୍ପ୍ୟୁଟର୍ ବାହାରିଛି। ବଟନ ଟିପିଲେ କମ୍ପ୍ୟୁଟର୍ ବରାଦ ମୁତାବକ ଗଳ୍ପ ଲେଖେ, ରଚନା ଲେଖେ। ଦଶ ରକମର ସୂର୍ଯ୍ୟୋଦୟ ବର୍ଣ୍ଣନା, ସାତ ଆଠ ରକମର ଋତୁ ବର୍ଣ୍ଣନା, ଦଶ ରକମର ଫ୍ରୟେଡୀୟ ସମ୍ବନ୍ଧ, ଇଦିପସ ସମ୍ପର୍କ, ମାର୍କସ, ରସେଲ୍ ମାଓ, ଅରବିନ୍ଦ ଦର୍ଶନ, ସବୁକିଛି ପୋଗ୍ରାମ୍ ହୋଇ ରହିଛି। ବନ୍ଧୁକୁ ଲେଖିଦେଲି କମ୍ପ୍ୟୁଟରଟି ନେଇ ଆସିବା ପାଇଁ।

କମ୍ପ୍ୟୁଟର୍ ଆସିଲା। ପଢ଼ାଘର ଟେବୁଲ୍ ଉପରୁ ସବୁ ବହିପତ୍ର ସଫା କରି କମ୍ପ୍ୟୁଟରଟିକୁ ବସେଇଲି। ପଢ଼ାଘରର ସବୁ ଝରକା କବାଟ ବନ୍ଦ, କମ୍ପ୍ୟୁଟରର ଧୂଳି ମଳି ସହ୍ୟ ହୁଏ ନାହିଁ। ତା'ପରେ ଗୋଟାଏ ଛୋଟ ଟୁଲ୍ ଉପରେ ବସି କମ୍ପ୍ୟୁଟରର ସୁଇଚ୍ ଟିପି ଦେଲି। କମ୍ପ୍ୟୁଟର ପର୍ଦ୍ଦା ଉପରେ ସବୁଜ ରଙ୍ଗର ଧାଡ଼ି ଆଗକୁ ବଢ଼ିଯାଏ। ଅନ୍ୟ ଏକ ସୁଇଚ୍ ଟିପି କମ୍ପ୍ୟୁଟର୍ ମୁଡ୍ ଆଣେ। ଅନେକଟା ବଜେଇବା ପୂର୍ବରୁ ସିତାରର ସ୍ୱର ବାନ୍ଧିବା ପରି। କମ୍ପ୍ୟୁଟର୍ ସାଙ୍ଗକୁ ମୁଁ ବି ମୁଡ୍ ଆଣେ। ଟେପ୍‌ରେ ଇମନ କଲ୍ୟାଣରେ ସିତାର ବାଜେ।

ତା'ପରେ କମ୍ପ୍ୟୁଟରର ସୁଇଚ୍ ଗୋଟାକ ପରେ ଗୋଟାଏ ଟିପି ଚାଲେ। ପରିବେଶ ସୃଷ୍ଟି, ପାତ୍ର-ପାତ୍ରୀ ପରିଚୟ, ଖଳନାୟକର ଉପସ୍ଥିତି ନାୟକ ନାୟିକାର ସାମୟିକ ବିଚ୍ଛେଦ, ପରିଶେଷରେ ମିଳନର ସାହାନାଇ। କେଉଁଦିନ ରଙ୍ଗୀନ ସୂର୍ଯ୍ୟାସ୍ତର ବର୍ଣ୍ଣନା, କେଉଁଦିନ ନିଝୁମ୍ ରାତିର ବର୍ଣ୍ଣନା, କେଉଁଦିନ ହିରୋ ମୁହଁରେ ହୋ ଚି ମିନ୍‌ର ସଂଳାପ, କେଉଁଦିନ ହୁଏତ ବିବେକାନନ୍ଦଙ୍କ Oriental ଦର୍ଶନ। ପାଣ୍ଡୁଲିପି ଜମି ଉଠେ।

କେଇଦିନ ବେଶ ଖୁସିରେ କଟିଲା। ରାସ୍ତାରେ ଛାତି ଫୁଲେଇ ଚାଲିଲି। ପ୍ୟାଣ୍ଟ ସାର୍ଟ ବଦଳରେ ପାଇଜାମା ପଞ୍ଜାବି ପିନ୍ଧେ। ବୁଲ୍‌ଗାନିନ୍ ଦାଢ଼ି ଛାଡ଼ିଲି। ବାଳକୁ ଫୁର୍ ଫୁର୍ ଉଡ଼େଇଲି। କେହି ବନ୍ଧୁ ଯଦି ପଚାରେ ଲେଖା କେମିତି ହେଉଛି, ମୁରକି ହସି ଆଖିରେ ଜଣେଇ ଦିଏ 'ଦେଖିବ' 'ଦେଖିବ'।

ଦିନେ ଜଣେ ଅଧ୍ୟାପକ ବନ୍ଧୁଙ୍କୁ ମୋ (କମ୍ପ୍ୟୁଟର୍ ?) ଲେଖାଗୁଡ଼ିକ ଦେଖେଇଲି। ସମାଲୋଚକ ଭାବେ ଅଧ୍ୟାପକଙ୍କ ଖୁବ୍ ଖ୍ୟାତି। ପଣ୍ଡିତ ଲୋକ ନାଁର ଆଗରେ ପଛରେ ବିଶେଷଣ। ନିଜେ ଲେଖନ୍ତି ନାହିଁ। ଲେଖା ସମାଲୋଚନା କରନ୍ତି। ମୋ ଲେଖା ପଢ଼ି କହିଲେ 'ବଢ଼ିଆ ହୋଇଛି', ଆହୁରି ଲେଖ, ଯେତେ ଲେଖିବ ସେତେ ଜୁସ୍ ଆସିବ। ଯେତେ, କାଗଜ ଘସିବ ସେତେ ପାଲିସ ଆସିବ। ସେଦିନ ମୋତେ ଆଉ ପାଏ କିଏ ? ରାତିରେ ଭଲ ନିଦ ହେଲାନାହିଁ।

ଇତିମଧ୍ୟରେ ଗୋଟିଏ ଦିଟା ଲେଖା ପ୍ରକାଶ ପାଇଲା। ଭାବୁଥାଏ ବିଭିନ୍ନ ଆଡୁ ଚିଠି ଆସିବ। ସମାଲୋଚନା ବାହାରିବ। ପ୍ରକାଶକ ମାନେ ଘର ଆଗରେ ଧାରଣା ଦେବେ। ସଭା ସମିତିରୁ ଡାକ ଆସିବ। କବି Byronଙ୍କ କଥା ମନେ ପଡ଼ିଲା "I woke one morning and found myself famous" କିନ୍ତୁ କାହିଁ ସେମିତି ତ କିଛି ହେଲାନି। ମନ ଭାଙ୍ଗିଗଲା, କେଉଁଠି *କିଛି ତ୍ରୁଟି ବୋଧେ ରହିଗଲା।*

ଦିନେ ସମସ୍ତ ପାଣ୍ଡୁଲିପି ନେଇ ମୋର ମାନସ ଗୁରୁ ଲେଖକଙ୍କ ପାଖକୁ ଗଲି। ସବୁକଥା ଖୋଲି କହିଲି। ସବୁ ଶୁଣିଲେ। ଲେଖା ଗୁଡ଼ିକୁ ବେଶ ମନ ଦେଇ ପଢ଼ିଲେ। ତା'ପରେ ଦୁଇଟି ଚିତ୍ର ଦେଖେଇଲେ। ଗୋଟିଏ ରଙ୍ଗୀନ ଫଟୋଚିତ୍ର, ଅନ୍ୟଟି ଅଏଲ୍ ପେଣ୍ଟିଂ - ସୂର୍ଯ୍ୟାସ୍ତ। ତା'ପରେ ଟିକିଏ ମୁରୁକି ହସିଲେ ଲେଖକ ଜଣକ।



# ଉତ୍ତରାଧିକାର

ଗୋଟିଏ ଦେଶରେ ଜଣେ ରାଜା ଥିଲେ। ରାଜାଙ୍କ ଦୁଇ ଜାଆଁଳା ପୁଅ। ଦୁଇ ପୁଅ ରୂପରେ ଗୁଣରେ ଏକ ଅନ୍ୟଠୁ ବଳି। ରାଜାଙ୍କ ଅନ୍ତେ କାଳେ ଦୁଇ ପୁଅ ମଧ୍ୟରେ ରାଜ୍ୟ ପାଇଁ କଳି ହେବ ଓ ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯିବ, ତେଣୁ ରାଜା ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ଦୁଇ ପୁଅଙ୍କୁ ଡାକି କହିଲେ, 'ମୁଁ ବୁଢ଼ା ହେଲିଣି, ଏଥର ରାଜ୍ୟଭାର ତୁମ ଦୁହିଁଙ୍କ ଭିତରୁ ଜଣଙ୍କୁ ଦେଇ ମୁଁ ବିଶ୍ରାମ ନେବି।' ପୁଅମାନେ ରାଜାଙ୍କ କଥା ଶୁଣି ପରସ୍ପର ମୁହଁକୁ ଓ ପରେ ରାଜାଙ୍କ ମୁହଁକୁ ଅନେଇଲେ। ରାଜା କହିଲେ, ତୁମେ ଦୁଇଜଣ ମୋର ଦୁଇ ଆଖି ଭଳି। ଭଲ ଦେଖିବା ପାଇଁ ଦୁଇ ଆଖିର ଅବାଶ୍ୟକ। ମାତ୍ର ଗୋଟିଏ ଦେଶରେ ଦୁଇ ଜଣ ରାଜା ରହି ପାରିବେ ନାହିଁ। କେବଳ ଜଣେ ହିଁ ରାଜା ହେବ। ମୁଁ, ଠିକ କିରିଛି ତୁମେ ଦୁହେଁ ଦୁଇ ବର୍ଷ ପାଇଁ ବିଦେଶ ଯିବ। ଦୁଇ ବର୍ଷରେ ତୁମେ ବିଭିନ୍ନ ଦେଶ ବୁଲିବ, ସେଠାକାର। ଲୋକଙ୍କ ସହ ମିଶିବ, ସେମାନଙ୍କ ଚାଲିଚଳଣ ଆଚାରବ୍ୟବହାର ଦେଖିବ, ତା'ପରେ ତୁମ ଅନୁଭୂତି ଓ ବିଚାରବୋଧ ପରଖି ମୁଁ ଠିକ୍ କରିବି କିଏ ରାଜା ହେବ।' ରାଜାଙ୍କ କଥା ଶୁଣି ଦୁଇ ପୁଅ ଦୁଇ ଦିଗକୁ ବାହାରି ପଡ଼ିଲେ।

କିଛି ଦିନ ବୁଲିଲା ପରେ ପ୍ରଥମ ରାଜକୁମାର ପର୍ବତ ଘେର ମଧ୍ୟରେ ଥିବା ଏକ ଛୋଟ ରାଜ୍ୟରେ ପହଁଞ୍ଚିଲେ। ସେଠାରେ ରାଜାପୁଅ ଲକ୍ଷ୍ୟ କଲେ, ରାଜ୍ୟର ଅଧିକାଂଶ ଲୋକ ବୃଦ୍ଧ। ବଜାର ହାଟ କ୍ଷେତ ବାଡ଼ି ସବୁଠି ବିଭିନ୍ନ ଧରଣର ଯନ୍ତ୍ରରେ କାମ ଦାମ ହେଉଛି। ଦୋକାନମାନଙ୍କରେ ଜଣେ ଲେଖାଏ ବୃଦ୍ଧ ବସିଛନ୍ତି। ଦିନତମାମ ବୁଲି ବୁଲି ରାଜକୁମାର ସବୁ ଦେଖିଲେ। ଏତେ ବଡ଼ ସହରରେ ଗୋଟିଏ ମାତ୍ର ସ୍କୁଲ। ଖେଳ ପଡ଼ିଆରେ ପିଲା ନାହାଁନ୍ତି। ସେଠାରେ କିଛି ପ୍ରବୀଣ ବୃଦ୍ଧ ବୁଲୁଛନ୍ତି। ରାଜକୁମାର ମନେ

ମନେ ଭାବୁଥାନ୍ତି ଏ କିଭଳି ଦେଶ! ଏଠାକାର କୁନି ପିଲା ସବୁ କୁଆଡ଼େ ଗଲେ? କ୍ରମେ ସନ୍ଧ୍ୟା ଗଡ଼ି ରାତି ହେଲା। ରାଜାପୁଅ ଭାବିଲେ, ଏଥର ଦୋକାନ ବଜାର ବନ୍ଦ ହେବ। ମାତ୍ର ରାତି ଯେତେ ଘନେଇଲେ ମଧ ଦୋକାନ ବଜାର ସବୁ ସେମିତି ଖୋଲା ଥାଏ। ରାଜାପୁଅ ଦେଖିଲେ ଦେଶଟା ସତେ ଯେପରି ଗୋଟାଏ କାରଖାନା, ଯେଉଁଠି ଚବିଶ ଘଣ୍ଟା କେବଳ କାମ ଆଉ କାମ। ରାଜକୁମାର ବୁଲି ବୁଲି ଶେଷରେ ଜଣେ ପ୍ରବୀଣ ବୃଦ୍ଧଙ୍କୁ ପଚାରିଲେ, 'ମହାଶୟ ମୁଁ ଏ ରାଜ୍ୟକୁ ପ୍ରଥମ ଥର ଆସୁଛି। ସକାଳୁ ଆପଣଙ୍କ ଦେଶର ଦୋକାନ ବଜାର ସବୁ ବୁଲି ଦେଖିଲିଣି, ଏଠି ସବୁ ନିୟମରେ ହେଉଛି। କେଉଁଠି ବେନିୟମ ନାହିଁ। ହେଲେ ଏଠାକାର ଗୋଟିଏ କଥା ମୁଁ ବୁଝିପାରୁ ନାହିଁ। ଆପଣଙ୍କ ଦେଶରେ କଣ ସମସ୍ତେ ବୁଢ଼ା ହୋଇ ଜନ୍ମନ୍ତି? ମୁଁ ଯାହାକୁ ଦେଖୁଛି ହୁଏତ ସେ ମୋ ବାପାଙ୍କ ବୟସର ନଚେତ୍ ମୋ ଜେଜେବାପାଙ୍କ ବୟସର। ରାଜକୁମାରଙ୍କ କଥା ଶୁଣି ପ୍ରବୀଣ ବୃଦ୍ଧ ଜଣକ କହିଲେ ସବୁ ସମ୍ଭବ ହୋଇଛି ଆମ ଦେଶର ମନ୍ଦିର ପାଇଁ। ଏଇ *ଯେଉଁ ପାହାଡ଼ ଦେଖୁଛ ସେଇ ପାହାଡ଼ ଉପରେ ଆମ ମନ୍ଦିର। ରାଜାପୁଅ* ପଚାରିଲେ, କେଉଁ ଠାକୁରଙ୍କ ମନ୍ଦିର? ଉତ୍ତରରେ ବୃଦ୍ଧ କହିଲେ, ଠାକୁରଙ୍କ ମନ୍ଦିର ନୁହେଁ ଆମର ବିଜ୍ଞାନ ମନ୍ଦିର। ସେ ମନ୍ଦିରରେ ବିଭିନ୍ନ ଧରଣର ପରୀକ୍ଷା ହୁଏ। ସେହି ମନ୍ଦିରରୁ ବାହାରିଛି 'ନିରୋଗ' ବଟିକା। 'ନିରୋଗ' ବଟିକା ଖାଇ କେହି ରୋଗ କବଳରେ ପଡୁ ନାହାନ୍ତି। ଆବଶ୍ୟକ ହେଲେ ଚିକିତ୍ସକମାନେ ଲେଜର୍ ରଶ୍ମି ସାହାଯ୍ୟରେ ଶରୀରର ପୁରାତନ ଦୁର୍ବଳ କୋଷମାନଙ୍କୁ ପରିବର୍ତ୍ତନ କରି ନୂତନ କୋଷ ଲଗେଇ ଦେଉଛନ୍ତି, ଏହାଛଡ଼ା ଶରୀରର କୌଣସି ଅଙ୍ଗ କୌଣସି କାରଣରୁ ଅକାମୀ ହୋଇଗଲେ ଆମର ଏଠି ତାହା ସହଜରେ ବଦଳ କରିହୁଏ। ଏଥିପାଇଁ ଦେଶରେ ବିଭିନ୍ନ ଧରଣର ଅଙ୍ଗ ସ୍ଥାପନାର ସେଲୁନ ମାନ ରହିଛି। ଏଣୁ ଆମ ଶରୀର ନୂଆ ମେସିନ ଭଳି କାର୍ଯ୍ୟ କରେ। ଦେଶରେ ମୃତ୍ୟୁ ନାହିଁ କହିଲେ ଚଳେ। ତେଣୁ ଜନସଂଖ୍ୟା ବୃଦ୍ଧି ରୋକିବା ପାଇଁ ଜନ୍ମହାରକୁ ମଧ ନିୟନ୍ତ୍ରଣ କରା ହୋଇଛି। ଏବେ ବୁଝିପାରୁଛ କାହିଁକି ଆମ ଦେଶରେ ବୃଦ୍ଧ ସଂଖ୍ୟା ଅଧିକ। ତେବେ ଆମ ବିଜ୍ଞାନୀମାନେ କହିସାରିଲେଣି ଆଉ କେଇଟା ଦିନରେ ଏପରି ବଟିକା ବାହାରିବ, ଯାହା ଖାଇଲେ କେହି କେହି ବୁଢ଼ା ହେବେ ନାହିଁ। ଏବେ ମୃତ୍ୟୁ ଆଉ ଆମ ସହ ଆଣ୍ଟି ପାରୁନାହିଁ; କେବଳ ଯୌବନଟାକୁ ଧରି ପାରିଲେ ଆଉ ଚିନ୍ତା ନାହିଁ। ରାଜକୁମାର ଉତ୍ସୁକ ହୋଇ ପଚାରିଲେ, ଆପଣଙ୍କ ଏଠି ଲୋକମାନେ ଦିନରାତି ଚବିଶ ଘଣ୍ଟା ଖଟୁଛନ୍ତି, ଆପଣମାନେ କ'ଣ ବିଶ୍ରାମ ନିଅନ୍ତି ନାହିଁ? ବୃଦ୍ଧ, ରାଜକୁମାର ପାଟିରୁ କଥା ଟାଣି ନେଇ କହିଲେ, ବିଶ୍ରାମ ନେବେ କ'ଣ? ବଟିକା ଖାଇ କାହାକୁ ନିଦ ହୁଏ ନାହିଁ। ତାଛଡ଼ା ଶୋଇଲେ କେତେ ସମୟ ନଷ୍ଟ ହୁଏ ତୁମେ ଜାଣ? ରାଜକୁମାର ଭାବିଲେ ସତେ ତ! ରୋଗରେ

ପଡ଼ି, ଶୋଇ ବସି ଆମେ କେତେ ସମୟ ନଷ୍ଟ କରୁଛୁ। ଏଠି ଲୋକ ନିରୋଗ ବଟିକା ଖାଇ ମେସିନ ପରି ଖଟୁଛନ୍ତି ମୃତ୍ୟୁର ଭୟ ନାହିଁ। ରାଜକୁମାର ବିଜ୍ଞାନୀମାନଙ୍କୁ ମନେ ମନେ ପ୍ରଶଂସା କଲେ। ସେ ଦେଶରେ କିଛି ଦିନ ରହି 'ନିରୋଗ' ବଟିକା ଧରି ରାଜକୁମାର ମନ ଖୁସିରେ ଦେଶକୁ ଫେରିଲେ।

ଏପଟେ, ଦ୍ୱିତୀୟ ରାଜକୁମାର ଅନେକ ବୁଲି ଏକ ଆଶ୍ଚର୍ଯ୍ୟ ସୁନ୍ଦର ଦେଶରେ ପହଞ୍ଚିଲେ। ସେଦିନ ସେ ରାଜ୍ୟରେ କିଛି ଗୋଟିଏ ଉତ୍ସବ ଥାଏ। ତେଣୁ ଦଳ ଦଳ ହୋଇ ସ୍ତ୍ରୀ ପୁରୁଷ ବାଳକ ବାଳିକା ସୁନ୍ଦର ପୋଷାକ ପିନ୍ଧି ଚାଲିଥାନ୍ତି। ପ୍ରତ୍ୟେକ ଦଳ ମଝିରେ ରହିଥାନ୍ତି ଏକ ଅଶ୍ୱାରୋହୀ, ଅଶ୍ୱାରୂଢ଼ ବ୍ୟକ୍ତିଟି ଯେ ଦଳପତି ଦୂରରୁ ସ୍ପଷ୍ଟ ଜଣାପଡୁଥାଏ। ତାଙ୍କ ମୁଣ୍ଡ ଉପରେ ଜଣେ ଛତା ଧରିଥାନ୍ତି। ଅଶ୍ୱାରୋହୀ ଜଣକ ହାତରେ ଧରିଥାନ୍ତି ଏକ ସୁନ୍ଦର ତମ୍ବା କଳସ। ଦ୍ୱିତୀୟ ରାଜକୁମାର ଗୋଟିଏ ଦଳସହ ଆଗେଇ ଚାଲିଥାନ୍ତି। ବାଟରେ ଯାଉ ଯାଉ ଜଣଙ୍କୁ ପଚାରିଲେ 'ଆଜିର ଏ ବିଶେଷ ଅନୁଷ୍ଠାନ କାହିଁକି? ଉତ୍ତରରେ ସହଯାତ୍ରୀ ଜଣକ କହିଲେ, 'ଗତକାଲି ଆମର ଏଇଠି ବର୍ଷର ପ୍ରଥମ ବର୍ଷା ହୋଇଥିଲା। ପ୍ରଥମ ବର୍ଷା ପାଣିରେ ଆମେ ଯାଉଛୁ ମନ୍ଦିରକୁ ସେଠାରେ ଦେବତାଙ୍କୁ ବର୍ଷା ପାଣିରେ ଶ୍ରଦ୍ଧା ଜଣେଇବୁ।' ରାଜକୁମାର ସେମାନଙ୍କ ସହ ମନ୍ଦିରରେ ପହଞ୍ଚିଲେ। ମନ୍ଦିରରେ ରାଜକୁମାର ଦେଖିଲେ ଦେବତାଙ୍କ ଆସନ ଶୂନ୍ୟ ତେବେ ଦେବୀ ଉପରେ ଥୁଆ ହୋଇଛି ଚାରାଗଛଟିଏ ଆଉ କିଛି ଚକଟା ମାଟି। ରାଜକୁମାର ପୁରୋହିତଙ୍କୁ ପଚାରିଲେ, ଆପଣମାନଙ୍କ ଦେବତା କିଏ? ଉତ୍ତରରେ ପୁରୋହିତ ଦେବୀକୁ ହାତ ଦେଖେଇ କହିଲେ ଏଇ ମାଟି ଓ ଏଇ ବୃକ୍ଷ ଆମ ଦେବତା। ଏଇ ମାଟି ଓ ବୃକ୍ଷ ପାଇଁ ଆମ ଜୀବନ ରାଜକୁମାର ମନ୍ଦିରରୁ କିଛି ମାଟି ନେଇ ଦେଶକୁ ଫେରିଲେ।

ଦୁଇ ରାଜକୁମାର ଫେରିଲେ ପରେ ରାଜା ପାତ୍ରମନ୍ତ୍ରୀଙ୍କ ଏକ ବିରାଟ ସଭା ଡାକିଲେ। ସେଠାରେ ଦୁଇ ରାଜକୁମାର ନିଜର ଅନୁଭୂତି କହିଲେ ଓ ଆଣିଥିବା ବିଶେଷ ଉପହାର ରାଜାଙ୍କୁ ଦେଲେ। ପ୍ରଥମ ରାଜକୁମାରଙ୍କ ଉପହାର ଦେଖି ସଭାସଦମାନେ ସାଧୁ, ସାଧୁ, କହି ରାଜକୁମାରଙ୍କୁ ଉତ୍ସାହିତ କଲେ ମାତ୍ର ଦ୍ୱିତୀୟ ରାଜକୁମାରଙ୍କ ଉପହାର ନେଇ ଅନେକେ ମୁହଁ ତଳକୁ କରି ହସିଥିଲେ। ଉପହାର ଗ୍ରହଣ ପରେ ରାଜା ମନ୍ତ୍ରୀଙ୍କୁ କହିଲେ, ଆପଣ କିଛି କହିବେ? ମନ୍ତ୍ରୀ ଆସନ ଛାଡ଼ି ଠିଆ ହେଲେ। ମହାରାଜ ଓ ଅନ୍ୟ ସଭାସଦମାନଙ୍କୁ ପ୍ରମାଣ କରି କହିଲେ, 'ମହାରାଜ, ପ୍ରଥମ ରାଜକୁମାର ଯାହା ଆଣିଛନ୍ତି, ସେଇଭଳି ବଟିକାଟିଏ ମଣିଷକୁ ଅନେକ ଯନ୍ତ୍ରଣାରୁ ମୁକ୍ତି ଦେବ। ଦେଶରେ ଡାକ୍ତର ଖାନା ରହିବ ନାହିଁ। ଔଷଧ ଦୋକାନ ବନ୍ଦ ହୋଇଯିବ। ସମସ୍ତେ ସୁସ୍ଥସବଳ ରହିବେ, ମେସିନ୍ ପରି ଖଟିବେ। ଦେଶରେ

ମହାମାରୀର ଡର ନଥିବ। ଶ୍ମଶାନ କବରଖାନା ନଥିବ। ଆମର କିଛି ଡାକ୍ତରଙ୍କୁ ସେ ଦେଶକୁ ପଠେଇଦେଲେ ସେମାନେ ଅଙ୍ଗ ସ୍ଥାପନାର ସହଜ ଉପାୟମାନ ଦେଖିଆସିବେ। ମନ୍ତ୍ରୀ ଡୋକ ଗିଳିଲେ- ହେଲେ ମହାରାଜ ଏହା ଦ୍ୱାରା ଜୀବନର ଛନ୍ଦ କଟିଯିବ। ଜନ୍ମ ଓ ମୃତ୍ୟୁକୁ ନେଇ ଜୀବନ। ତେଣୁ ଜୀବନ ଏତେ ସୁନ୍ଦର। ନୂତନକୁ ଆସିବାକୁ ନ ଦେଲେ ପୁରାତନର ମୂଲ୍ୟ ରହିବ ନାହିଁ। ଗଛରୁ ଯେବେ ପତ୍ର ଝଡ଼ିଯାଏ ଗଛ ଭାବେ ଆହା, ମୋର ସୁନ୍ଦର ପତର ଗୁଡ଼ାକ ଝଡ଼ିଗଲା ମାତ୍ର ପତ୍ର ନ ଝଡ଼ିଲେ ନୂତନ ପତ୍ର କଅଁଳିବ କିପରି ? ଶୈଶବ, କୈଶୋର ଯୌବନ ବାର୍ଦ୍ଧକ୍ୟ କୁ ନେଇ ଜୀବନର ମାଧୁର୍ଯ୍ୟ। କୌଣସି ଏକ ଅବସ୍ଥା ଯଦି ଅନେକ ଦିନ ରହିଯାଏ ତେବେ ପରିବର୍ତ୍ତନ ଅଭାବରୁ ଜୀବନରେ ବଂଞ୍ଚିବାର ସୁଆଦ ରହିବ ନାହିଁ। ମୃତ୍ୟୁ ଅଛି ତେଣୁ ଜୀବନକୁ ଆମେ ଉପଭୋଗ କରିପାରୁଛୁ। ଭାଗବତର ସେଇ ସୁନ୍ଦର ଗପଟି ଯେଉଁଠି ରାଜା ପରିକ୍ଷିତ କେବଳ ସାତ ଦିନ ପାଇଁ ବଞ୍ଚିବାର ଅଧିକାର ପାଇଥିଲେ ତେଣୁ ସାତଦିନ ମଧ୍ୟରେ ଜୀବନକୁ କିପରି ସୁନ୍ଦର ଭାବରେ ଉପଭୋଗ କରିହେବ ତାହାର ଉପାୟ ସେ କହିଗଲେ। ଆମ ସଭିଙ୍କ ବଞ୍ଚିବାର ଏକ ନିର୍ଦ୍ଦିଷ୍ଟ ସମୟ ରହିଛି ସମୟଟି କେତେ ଆମେ ଜାଣୁ ନା, ତେଣୁ ବଞ୍ଚିବାର ନୂତନ ଆନନ୍ଦ ଆମେ ପ୍ରତିଦିନ ଖୋଜୁଛୁ। ଥରେ ସେ ସମୟଟି ଆମେ ଜାଣିଗଲେ ବଞ୍ଚିବାର ଉଦ୍ଦେଶ୍ୟ ରହିବ ନାହିଁ। ଜୀବନ ହୋଇଯିବ କ୍ଳାନ୍ତିକର।

ଦ୍ୱିତୀୟ ରାଜକୁମାର କୌଣସି ଆଖି ଦୁରୁଶିଆ ବସ୍ତୁ ଆଣି ନାହାନ୍ତି। ସେ ଯାହା ଆଣିଛନ୍ତି ତାହା ଜୀବନର ପ୍ରତୀକ। ମାଟି ଓ ବୃକ୍ଷଲତା ପାଇଁ, ଆଜି ପୃଥିବିରେ ଜୀବନ ଏତେ ସରସ ଓ ସୁନ୍ଦର। ମହାରାଜ ଆମେ ଦେବତାଙ୍କୁ କେତେ ରୂପରେ ପୂଜା କରୁଛୁ। ଦେବତାଙ୍କ ରୂପ ନେଇ ଆମ ଭିତରେ କେତେ ପ୍ରଭେଦ। ମାତ୍ର ଯିଏ ଆମକୁ କୋଳେଇଛି ତା କଥା କିଏ ଚିନ୍ତା କରୁଛି। ଯେଉଁ ଦିନରୁ ମଣିଷ ମୁଣ୍ଡଟେକି ଦୁଇ ଗୋଡ଼ରେ ଚାଲି ଶିଖିଲା ସେହି ଦିନରୁ ସେ ତା'ଣ ବୁଦ୍ଧି ଓ ମୁକ୍ତ ଦୁଇ ବାହୁ ବଳରେ, କେବଳ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ କେତେ କଣ ଉଦ୍ଭାବନ କରି ଚାଲିଛି। ପୃଥିବୀରେ ମଣିଷ ସ୍ଥିତି ଯେତେ ସୁଦୃଢ଼ ହୋଇଛି। ସେଇ ମୁତାବକ ତାର ସଂଖ୍ୟା ବଢ଼ିଚାଲିଛି। ତାର ବାସସ୍ଥାନ ପାଇଁ ଭୂମି ଦରକାର। ସେ ବାହୁବଳରେ ତାହା ଦଖଲ କଲା। ଅରଣ୍ୟ ଘୁଞ୍ଚିଗଲା। ଖାଦ୍ୟ ପାଇଁ କୃଷି। କୃଷି ପାଇଁ ଭୂମି। ମଣିଷ ଆପେଇଲା ଅରଣ୍ୟକୁ। ଅରଣ୍ୟ ପଛକୁ ହଟିଲା। ଅଧିକ ଅମଳ। ସବୁଜ ବିପ୍ଳବ। ସେଥିପାଇଁ ଭୂମି କର୍ଷଣ ସାର ପ୍ରୟୋଗ। ଉତ୍ପାଦନ ବୃଦ୍ଧି ହେଲା। ତା ସାଙ୍ଗକୁ ମାଟି ତାର ଗୁଣ ହରେଇଲା। ମଣିଷର କିନ୍ତୁ ସେଥିପ୍ରତି ନିଘା ନାହିଁ। ତାର ଲକ୍ଷ୍ୟ ଆହୁରି ଭୋଗ ଆହୁରି ସୁଖ। ଆହୁରି ସ୍ୱାଚ୍ଛନ୍ଦ।

ମଣିଷ ନିଜେ ଅମର ହେବା କଥା ଭାବୁଛି । ମାତ୍ର ଅନ୍ୟପ୍ରାଣୀ ବଞ୍ଚିଲେ କି ମଲେ ସେ କଥା ସେ ଜମାରୁ ଭାବୁ ନାହିଁ। ପ୍ରତିବର୍ଷ ଶହ ଶହ କିସମର ପ୍ରାଣୀ ଓ ଉଦ୍ଭିଦ ଲୋପ ପାଇଯାଉଛନ୍ତି। ଏହି ପରି ଯଦି ହୁଏ ତେବେ ଆଉ କେତୋଟା ବର୍ଷରେ ଏ ପୃଥିବୀରେ ହୁଏତ କେବଳ ମଣିଷ ହିଁ ରହିବ, ଆଉ ରହିବ ତାର ସୃଷ୍ଟ ଯାନ୍ତ୍ରିକ ମଣିଷ ରବଟ। ସେଦିନ ଯାନ୍ତ୍ରିକ ମଣିଷ ସହ ରହି ମଣିଷର ମଣିଷପଣିଆ ରହିବତ ?

ପୃଥିବୀ ଆମର ଏକମାତ୍ର ବାସସ୍ଥାନ। ସୌର ପରିବାରର ଏକମାତ୍ର ଗ୍ରହ ଯାହାର ରଙ୍ଗ ଶାଗୁଆ। ଇଏ ସେଇ ଗ୍ରହ ଯେଉଁଠି ଜୀବନର ମାନେ କଣ ବୁଝି ହୋଇଥାଏ। ପୃଥିବୀରେ ଏ ଜୀବନ ଦିନକରେ ଆସିନାହିଁ, ଅନେକ ଭଙ୍ଗାଗଢ଼ା ପରେ ଏ ଧରିତ୍ରୀ କୋଳରେ ଜୀବନ ଆସିଛି। ଜୀବନ ପାଇଁ ପୃଥିବୀ ଏତେ ମନୋରମ। ପ୍ରାଣୀ ହେଉ ବା ଉଦ୍ଭିଦ ହେଉ ପୃଥିବୀ ଉପରେ ସମସ୍ତଙ୍କ ସମାନ ଅଧିକାର ତେବେ ମଣିଷ କାହିଁକି ଅନ୍ୟକୁ ବଂଚିବାର ଅଧିକାର ଦେବ ନାହିଁ ?

ମହାରାଜ, ଆପଣ ଦେଶର ରାଜା ହୋଇ ଯେଉଁଭଳି ଆପଣଙ୍କ ଉତ୍ତର ପୁରୁଷ ପାଇଁ ଚିନ୍ତା କରୁଛନ୍ତି, ଭାବୁଛନ୍ତି ଆପଣଙ୍କ ପରେ ଆପଣଙ୍କ ଉତ୍ତରାଧିକାରୀ ଏ ରାଜ୍ୟ ଏମିତି ଭୋଗ କରୁ ମଣିଷ ଏ ଧରାର ଅଧିପତି ହୋଇ କେବଳ ନିଜ ଚିନ୍ତା ନକରି ତାର ଉତ୍ତର ପୁରୁଷ ପାଇଁ ଟିକିଏ ଚିନ୍ତା କରନ୍ତା ତେବେ ଏ ଧରିତ୍ରୀ ସବୁଦିନ ଏମିତି ଶାଗୁଆ ସୁନ୍ଦର ରହନ୍ତା। ମହାରାଜ ଶେଷରେ ଗୋଟିଏ କଥା, ଏ ପୃଥିବୀ ଆମେ ଆମ ପୂର୍ବଜଙ୍କଠୁ ପାଇ ନାହୁଁ ଆମେ ଆମ ଉତ୍ତରପୁରୁଷଙ୍କ ଧାରରେ ଆଣିଛୁ। ଏ ପୃଥିବୀ ତାଙ୍କର।''



# ଲେମିଂସହ ଏକ ସାକ୍ଷାତକାର

(ମୂଷା ଜାତୀୟ ଲେମିଂର ବିଚିତ୍ର ବ୍ୟବହାର ପ୍ରାଣୀବିଜ୍ଞାନୀମାନଙ୍କ ନିକଟରେ ଏବେ ମଧ୍ୟ ଏକ ପ୍ରଶ୍ନବାଚୀ। ଲେମିଂ ଦଳବଦ୍ଧ ହୋଇ ରୁହେ, ଦଳର ସଂଖ୍ୟାକୁ ନିୟନ୍ତ୍ରଣରେ ରଖିବାପାଇଁ (?) ଏକା ସାଙ୍ଗରେ ଦଳବଦ୍ଧ ହୋଇ ଆତ୍ମହତ୍ୟା କରିଥାଏ।)

ଲେମିଂଙ୍କ ବ୍ୟବହାରକୁ ନେଇ ଗବେଷଣା କରୁଥିବା କ୍ଲାନ୍ତ ପ୍ରଫେସର ଲଥକରି ବୁଦାକଡରେ ଥିବା ଉଚ୍ଚ ପଥର ଉପରେ ବସି ପଡିଲେ।

'ଧୀରେ ପ୍ରଫେସର।'

'ଓ'! ପ୍ରଫେସରଙ୍କ ପାଟିରୁ ଆପେ ବାହାରିଲା। ଆଖି ବୁଲେଇ ଏଣେତେଣେ ଦେଖିଲେ। କିଏ କହିଲା! ବସିଥିବା ପଥର କଡରେ ତାଙ୍କର ଆଖି ପଡିଲା। ଆଉ ଟିକେହେଲେ ଚାପିହୋଇ ଯାଆନ୍ତା ବିଚରା। ପ୍ରଫେସର ଆଶ୍ଚର୍ଯ୍ୟ ହୋଇଗଲେ, ସାମାନ୍ୟ କଡକୁ ଘୁଞ୍ଚିଯାଇ ପଚାରିଲେ, 'ତୁମେ କଥା କହିପାର?'

—'ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି', କହିଲା ଲେମିଂ। 'ତୁମେ ମଣିଷ ସବୁଥିରେ ଏମିତି ଚମକିପଡି କାହିଁକି? ଭାବିଛ କେବଳ ମଣିଷ ହିଁ କଥା କହିପାରେ।'

—'ନା – ତା' – ନୁହେଁ...'

—'ତେବେ! ତୀର୍ଯ୍ୟକ ଦୃଷ୍ଟିରେ ପ୍ରଫେସରଙ୍କୁ ଅନେଇ ଲେମିଂ କହିଲା, 'ଆଜି ଯେଉଁ କଥା ତୁମେ କହୁଛ, ଯେଉଁ 'କଥାଭାଷା' ପାଇଁ ତୁମର ଏତେ ଅଭିମାନ, ତାହା ତୁମେ ଅନ୍ୟକୁ ଅନୁକରଣ କରି ହିଁ ଶିଖିଛ, ସେଥିପାଇଁ ତୁମର କେତେ ଅହଙ୍କାର ପ୍ରଫେସର ନୀରବରେ ମୁଣ୍ଡ ଟୁଙ୍ଗାରିଲେ।

—'ଟିକେ କାନପାରି ଶୁଣ, ଆପାତଃ ଝିଂ ଝିଂ ହେଉଥିବା ଶବ୍ଦଟିରେ କେତେ ପ୍ରକାର ଭେଦ, ଝିଂକାରୀଟି କେତେ ସହଜରେ କେବଳ ତା'ର

ଡେଣା ଓ ଗୋଡ ଦେଇ ସମସ୍ତ ଶବ୍ଦ କରିପାରୁଛି। ଯଦି ତୁମକୁ ଏହିପରି ଶବ୍ଦ କରିବାକୁ ହୁଏ, ସେଥିପାଇଁ ତୁମର କେତେ ସରଞ୍ଜାମ ଦରକାର– ଘୋଡା ଲାଙ୍ଗୁଡରୁ ବାଳ, ମେଣ୍ଢାର ଅନ୍ତବୁଜୁଳା, ଛେଳି ଚମଡା, ତାଲିକାର ଶେଷ ନାହିଁ। ଗମ୍ଭୀର ହୋଇ ପ୍ରଫେସର କହିଲେ, 'ଆମେ ଏକ ନିର୍ଭରଶୀଳ ଜାତି।'

–କେବଳ ନିର୍ଭରଶୀଳ ନୁହେଁ, ତୁମେ ଏକ ବିଚିତ୍ର ଜାତି। ହସିଲେ ପ୍ରଫେସର, 'ଆମେ କିନ୍ତୁ ତୁମକୁ ସବୁଠୁ ବିଚିତ୍ର ଜୀବ ବୋଲି ଜାଣୁ। ତା'ନହେଲେ–'

କଥା ମଝିରେ ପ୍ରଫେସରଙ୍କୁ ଅଟକେଇ ଦେଇ ଲେମିଂ କହିଲା– 'ଖାଲି ବିଚିତ୍ର କହିଲେ ତୁମ ପ୍ରତି ଅବିଚାର ହେବ। ମଣିଷର କେବଳ 'ମ' ଅକ୍ଷରଟି ଦେଇ ତୁମ ଗୁଣ ବଖାଣିଲେ ତୁମପରି ମଦୋଦ୍ଧତ, ମତଲବୀ, ମନମୁଖିଆ, ମୁଖଲଜ୍ଜାହୀନ ମନ୍ଦସ୍ୱଭାବର ଜୀବଟିଏ ଅଛି କି?'

–'ଆମ ଦୁନିଆ କଥା ତୁମେ ବୁଝିପାରିବ ନାହିଁ। ମୁଣ୍ଡ ଟେକି ବଞ୍ଚିବାକୁ ହେଲେ ସେ ସମସ୍ତ ଗୁଣର ଅଳ୍ପ ବହୁତ ଆବଶ୍ୟକ।

–ଭଲ କହିଲ, ତୁମେ ଶୃଗାଳକୁ କୁହ ଧୂର୍ତ୍ତ; ମାତ୍ର ଧୂର୍ତ୍ତତାରେ ତୁମେ ଶୃଗାଳଠୁ କାଠିଏ ଉପରେ। କଥାରେ ତୁମକୁ ପାରି ହେବ ନାହିଁ। ସବୁଥିରେ ତୁମର ହାମବଡାମି। 'ମୁଁ' ଛଡା ତୁମେ ଆଉ କ'ଣ ଜାଣ? ତୁମର ସବୁ କାମ ସ୍ୱାର୍ଥପାଇଁ। ସ୍ୱାର୍ଥପାଇଁ ତୁମେ ଅନ୍ୟକୁ ହାତରେ ମାର, ଭାତରେ ମାର। ନିଜ ସ୍ୱାର୍ଥରେ ଟିକେ ଆଞ୍ଚ ଆସିଲେ ତୁମେ ବ୍ୟସ୍ତ ହୁଅ। ମାତ୍ର ଅନ୍ୟର ସୁଖ ତୁମର ସହ୍ୟ ହୁଏନାହିଁ। ଏଭଳି ସ୍ୱାର୍ଥାନ୍ଧ, ପରଶ୍ରୀକାତର ଜୀବ ଆଉ କିଏ ପ୍ରାଣୀକୁଳରେ ଅଛି?'

–'ତୁମେ ଯାହାକୁ ସ୍ୱାର୍ଥ କହୁଛ, ଜୀବୀକାପାଇଁ ତାହା ଅଳ୍ପ ବହୁତ ଦରକାର।'

–'ପ୍ରଫେସର, ଜୀବିକା ନାଁରେ ତୁମେ କ'ଣ ନ କରୁଛ? ଚାଖଣ୍ଡେ କନା, ଦୁଇ ମୁଠା ଅନ୍ନ, ତିନିହାତ ଜମି ହେଲେ ଯେଉଁଠି ଢ଼େର୍... ତୁମର ଇଚ୍ଛା ପୃଥିବୀଟାକୁ ଦଖଲ କରନ୍ତ କି! ଦୁଇଟା ବାହୁ ପାଇଛ। ପୃଥିବୀଟାକୁ ତୁମ ଇଚ୍ଛାରେ ଚଳେଇବ। ଜଙ୍ଗଲ କାଟି ତେଣେ କଂକ୍ରିଟ୍ ଜଙ୍ଗଲ ବନଉଛ। ମୁକ ଗଛ, ନିରୀହ ପ୍ରାଣୀଗୁଡାଙ୍କ ତୁମର କି ଅପରାଧ କରିଛନ୍ତି?'

–'ବୀରଭୋଗ୍ୟା ବସୁନ୍ଧରା, ଯିଏ ତାକୁ ବାହୁବଳରେ ଦଖଲ କଲା ସେ ତାହାର। କାହାପାଇଁ ଲୁହ ଝରେଇବା ଆମକୁ ସାଜେ ନାହିଁ।

–'ହଁ, କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଭଗବାନ ତୁମକୁ ଦୁଇଟି ବାହୁ

ଦେଲେ, ତୁମେ ମୁଣ୍ଡ ଟେକି ଚାଲିଲ। ତୁମର ସେଇ ଉଦ୍ଧତ ମୁଣ୍ଡଟି ଦୁର୍ବୁଦ୍ଧିରେ ଭରା। ତୁମେ ପରା ନିଜକୁ ଭଗବାନଙ୍କ ମାନସପୁତ୍ର ବୋଲାଅ, ଆପଣା ଆପେ ଶ୍ରେଷ୍ଠ ଜୀବ କହି ଡିଣ୍ଡିମ ବଜାଅ। କ'ଣ ଦେଖି।'

ଆଖି ଥାଇ ବି ତୁମେ ଅନ୍ଧ।

ପ୍ରଫେସର ହସି ପକାଇଲେ। 'ତୁମେ ଆମ ଜାତି ଉପରେ ବେଶ୍ ଭଲ ଧାରଣା କରିଛ।'

—'ଜୀବନରେ ଆଶା ଥିଲା ଭଗବାନଙ୍କୁ ଦେଖିବି, ତାଙ୍କର ତ ଦେଖା ପାଇଲି ନାହିଁ, ଭାବିଲି ଦେଖେ ତାଙ୍କ ମାନସପୁତ୍ରଙ୍କୁ ଥଟ୍ଟାଳିଆ ସ୍ୱରରେ ପ୍ରଫେସର ପଚାରିଲେ, 'କ'ଣ ଦେଖିଲ—?'

—'ଏକ ସ୍ୱାର୍ଥାନ୍ଧ, ଶଠ, ଦଗାବାଜ, ପାପାଚାରୀ ଜୀବଟିଏ।' ଟିକିଏ ରହିଯାଇ ସ୍ୱଗତ ହୋଇ ମନେ ମନେ କହିଲା, 'କାହିଁକି ଯେ ଜନ୍ମିଲା।'

—'ଥାଉ ଥାଉ ବହୁତ ହେଲା।' ହାତ ଟେକି ଥମିବାକୁ କହିଲେ ପ୍ରଫେସର : ପରେ ଗାଢ଼ ସ୍ୱରରେ କହିଲେ, 'ଜାଣି ଖୁସି ହେବ ମୁଁ ଜୀବନଯାକ ତୁମ ଲେମିଂମାନଙ୍କ ଜୀବନଯାତ୍ରା ଓ ବ୍ୟବହାର ଉପରେ ହିଁ ଗବେଷଣା କରିଛି। ହେଲେ ଠିକ୍ ତୁମ ପରି ମୁଁ ବି ଗୋଟିଏ କଥା ବୁଝି ପାରିନାହିଁ, ଭଗବାନ ତୁମକୁ ସବୁ ସୁଯୋଗ ସୁବିଧା ଦେଲେ। ତଥାପି ତୁମର ଏ ଅସନ୍ତୋଷ କାହିଁକି ?

—ଅସନ୍ତୋଷ ? ଆମର ପୁଣି ଅସନ୍ତୋଷ ! ଆଖି ଢିମା ଢିମା କରି ଲେମିଂ ପଚାରିଲା।

—'ତା' ନ ଥିଲେ, ସମୁଦ୍ରକୁ ଡେଇଁ ତୁମେ ସବୁ ଆତ୍ମହତ୍ୟା କରନ୍ତ କିଆଁ ?'

—କି ଆଶ୍ଚର୍ଯ୍ୟ। ସେଇକଥା ମୁଁ ପଚାରିବି ବୋଲି ଭାବିଥିଲି। ତୁମେ ମଣିଷମାନେ କାହିଁକି ସେପରି କରୁନାହିଁ?

(James Thurber ଙ୍କ ଲିଖିତ Interview with a lemming ଛାୟାରେ ଲିଖିତ )



# ଦାନ - ପ୍ରତିଦାନ

ଜନ୍ମ ପୂର୍ବରୁ ବାପା ମରିଛି। ଜନ୍ମଦେଇ ମା ମଲା। ତାର ପୁଣି ନାଁ ଦେବ କିଏ ? କିଏ ଡାକେ ଛତରା କିଏ ବଜାରୀ କିଏ ହାରାମଜାଦା ଏମିତି କେତେ କଣ। ଯିଏ ଯାହା ଡାକୁ କୌଣସି ଡାକକୁ ସେ ଉପେକ୍ଷା କରେ ନାହିଁ। କେତେ ବା ବୟସ ବାର କି ଚଉଦ। ମୁଣ୍ଡରେ ମୁଣ୍ଡେ ଅଲରା ବାଳ। କେଉଁଦିନ ବୋଧହୁଏ ସେଥିରେ ପାନିଆ ବାଜିନାହିଁ କି ତେଲ ପଡିନାହିଁ। ତେବେ ମୁଣ୍ଡ ବେଶୀ କୁଣ୍ଡେଇ ହେଲେ ସେ ନଣ୍ଡା ହୋଇପଡେ। ଦେହରେ ଗୋଟାଏ ଚାଦରର ଭଗ୍ନାଂଶ। ହାଫ ପ୍ୟାଣ୍ଟଟି ପିନ୍ଧିବା ନ ପିନ୍ଧିବା ସମାନ, ଅଣ୍ଟା ପାଖରେ ଦଉଡିଟି ତାକୁ ଝୁଲାଇ ରଖିଛି। ଚାଦର ତଳେ ସାର୍ଟଟିଏ ଅବଶ୍ୟ ରହିଛି। ସାର୍ଟ ପକେଟରେ ବାଦାମଟାଏ, ବୁଟ, ଅଇଁଠା ଲେବେନଚୁସ୍ କେତେବେଳେ ଖଣ୍ଡିଆ ପିଜୁଳି ଯାହା ଖୁଣ୍ଟିକରି ପାଏ ସାଇତି ରଖେ। ବେଳେବେଳେ ବାବୁମାନେ ବାସି ପୁରୀ ବା ଅନ୍ତୁଳିଆ କଦଳୀଟା ଦିଅନ୍ତି। ସେ ଦିନ ତାର ଆଖି ଦିଟା ଚକଚକ ଦିଶେ। କୃତଜ୍ଞତାରେ ଦୁଇ ହାତ ଯୋଡି ସେ ମୁଣ୍ଡରେ ଠୁକାଏ। ଓଠ ତଳୁ ହଳଦିଆ ଦାନ୍ତ ଗୁଡାକ ବାହାରି ଆସେ। ଆହୁରି ମନ ଦେଇ କାମ କରେ।

ତାର ପୁଣି କାମ ? କାମ ନ କଲେ ଚଳିବ କିପରି। ସକାଳୁ ଖଣ୍ଡିଆ ଝାଡୁଟିଏ ଧରି ଷ୍ଟେସନ ଚାଲିଆସେ। ତାପରେ ଏକସପ୍ରେସ୍ ଟ୍ରେନର ରିଜର୍ଭେସନ ଡବାଟିଏ ଦେଖି ସେଥିରେ ଚଢ଼ି ଯାଏ। ଗାଡି ଦୂରରୁ ଆସୁଥିଲେ ଡବାରେ ବେଶୀ ଅଳିଆ। ଘୁସୁରି ଘୁସୁରି ନଇଁ ପଡି ବାବୁ କଣଙ୍କ ଚପଲ ତଳୁ ସେ ଅଳିଆ ସଫା କରେ। ଡବା ସଫା ହୋଇଗଲେ ଝାଡୁଟାକୁ କାଖରେ ଜାକି ଡାହାଣ ହାତଟା ବଢ଼େଇ ଦିଏ। ସେଥିରେ ଦଶ ପଇସି ପାଞ୍ଚ ପଇସି ପଡେ। କେତେବେଳେ ସୁଉକିଟା ବା ଅଧୁଲିଟା ଯେ ପଡେ ନାଇଁ ତାହା ନୁହେଁ,

ଏଇ ତ ଜୀବନ। ଏତିକି ପରିଚୟ।

ଛତରାକୁ ନେଇ କଣ ଗପ ହୁଏ। ରୂପେଲୀ ପର୍ଦ୍ଦାର ଛତରା ଦିନେ ବଡ ହୁଏ। ଦୁଷ୍ଟ ଦମନ କରେ ଶିଷ୍ଟକୁ ପାଳନ କରେ। ତାପରେ ନାୟିକା ହାତ ଧରି ଦୌଡି ଦୌଡି ସ୍ୱପ୍ନର ଦେଶକୁ ପଳାଏ। ଏ ସବୁ ସ୍ୱପ୍ନ। ତେବେ ସ୍ୱପ୍ନର ନଉକା ବେଳେବେଳେ ବାସ୍ତବ କୂଳରେ ଆସି ଭିଡେ, ସେତେବେଳେ କିଛିଟା ବାସ୍ତବ କିଛିଟା ସ୍ୱପ୍ନରୁ ଯାହା ଗଢ଼ି ହୁଏ - ତାହାହିଁ ହୁଏ ଗଳ୍ପ।

ଦିନ ଯାଏ। ତାହାରି ଭିତରେ ଛତରା ପାଇଁ ଗୋଟିଏ ଦିନ ଆସିଲା ପକ୍ଷୀରାଜ ଘୋଡ଼ା ଚଢ଼ି କେଉଁ ଅଜଣା ସ୍ୱପ୍ନ ରାଇଜରୁ।

ସେଦିନ, ସବୁଦିନ ପରି ତାର ଖଣ୍ଡିଆ ଝାଡୁଟିରେ ବେଞ୍ଚ ତଳ ଓଳଉ ଓଳଉ ଛତରା ପାଇଲା ସୁନା ମୁଦିଟିଏ। କ୍ଷଣିକ ପାଇଁ ଛତରାର ଆଖି ଦୁଇଟା ଚକଚକ କରି ଉଠିଲା। ଛାତି ଭିତରେ କିଏ ଯେପରି ହାତୁଡି ପିଟୁଛି। ମୁଦିଟାକୁ ହାତ ମୁଠାରେ ଧରି ଛତରାର ହାତ ଗୋଡ ଚାଲିଲା ନାହିଁ। କାହାର ମୁଦି? ବେଞ୍ଚ ଉପର ଏଇ ବାବୁ ମା ଭିତରୁ କାହାରି ହୋଇଥିବ। ରାତିରେ ଶୋଇଲା ବେଳେ ହୁଏତ ଗଳି ପଡିଛି। ପଚାରିବ କାହାର ମୁଦି ନା ପକେଟରେ ପୂରେଇ ଦେବ? ମୁଦିଟା ବିକିଲେ କେତେ ଟଙ୍କା ହେବ? ଶହେ, ଦୁଇ ଶହ? ଏତେ ଟଙ୍କା ଆଗରୁ କେବେ ସେ ଏକାଠି ଦେଖି ନାହିଁ। କଣ କରିବ ଏତେ ଟଙ୍କାରେ। କିନ୍ତୁ ମୁଦିଟା ବିକିବ କେଉଁଠି? ଯାହାକୁ ଦେଖେଇବ ସେ କହିବ 'କେଉଁଠୁ ଚୋରୀ କଲୁ? କେହି ତା କଥା ବିଶ୍ୱାସ କରିବେ ନାହିଁ। ଡରେଇବେ, ଧମକେଇବେ ମାଡଟା ଯେ ଦେବେ ନାହିଁ ତାହା ନୁହେଁ— ତାପରେ ନିଜେ ମୁଦିଟା ମାରି ନେବେ। ତାଠୁ ଭଲ ଯାହାର ଜିନିଷ ତାକୁ ଫେରେଇ ଦେବା। କିନ୍ତୁ ମୁଦିଟା କାହାର?

ବିହ୍ୱଳତା କଟିଲା ପରେ ପ୍ରଥମେ ଯାହାଙ୍କ ଉପରେ ଆଖି ପଡିଲା, ସେଇ ପ୍ରୌଢ଼ାଙ୍କ ଦୃଷ୍ଟିରେ କ'ଣ ଥିଲା କେଜାଣି ଛତରା ପାଟିରୁ ଆପେ ଆପେ ବାହାରି ଗଲା, 'ମୁଦିଟା—'। ଭଦ୍ରମହିଳାଙ୍କ ପୋଷାକରେ ଆଭିଜାତ୍ୟର ଛାପ। ପୂରିଲା ପୂରିଲା ମୁହଁ କିନ୍ତୁ ଆଖି ଦୁଇଟିରେ କିଏ ଯେପରି ବିଷର୍ଣ୍ଣତାର କଳା ବୋଳି ଦେଇଛି। ମୁଦିଟି ପାଇ ଭଦ୍ରମହିଳାଙ୍କ ମୁହଁ ଚକ ଚକ ହୋଇ ଉଠିଲା। ମନେ ମନେ ଗୁରୁଦେବଙ୍କୁ ସ୍ମରଣ କଲେ। ଗୁରୁଦେବଙ୍କ କହିବା ଅନୁସାରେ, 'ମୁଦିଟି ତାକୁ ମିଳେଇ ଦେବ ସେ ଯାହା ଖୋଜୁଛନ୍ତି।'

ସହଯାତ୍ରୀଙ୍କର ଅନେକ କୋଳାହଳ ପରେ ଭଦ୍ରମହିଳା ପଚାରିଲେ, ''ତୋ ନାଁ କ'ଣ?''

'ଜନ୍ମ ପୂର୍ବରୁ ଯାହାର ବାପା ମରିଛି, ଜନ୍ମ ଦେଇ ଯାହାର ମା ମଲା। ତାର ପୁଣି ଗୋଟେ ନାଁ କ'ଣ?' ଛତରାର ଦାର୍ଶନିକ ଉତ୍ତରରେ ଭଦ୍ରମହିଳା ଟିକେ ହସି କରି ପଚାରିଲେ, 'ତୋ ଘର କେଉଁଠି'।

'ଘର କଣ ଅଛି ମା, ଯେଉଁଠି ଶୋଇଲି ସେଇଟା ଘର କେବେ ପିଣ୍ଡାରେ କେବେ ପ୍ଲାଟଫର୍ମରେ। ହଠାତ୍ ଭଦ୍ରମହିଳା ପଚାରିଲେ, 'ମୋ ସାଙ୍ଗରେ ଯିବୁ?'

ଶୁଭାର୍ଥୀ ସହଯାତ୍ରୀମାନେ କୋଳାହଳ କରି ଉଠିଲେ, 'ଆପଣ ଏ କଣ କରୁଛନ୍ତି, ଏ ସବୁ ପିଲାଙ୍କୁ ଘରକୁ ନେଉଛନ୍ତି ଦେଖିବେ କେବେ ଚୋରୀ କରି ପଳେଇବ। ନହେଲେ ତା ଦଳକୁ ଖବର ଦେଇ ଘରେ ଡକେଇତି କରିବ। ଖବରଦାର ଏ ଭୁଲ କରିବେ ନାହିଁ।'

ସେଦିନ, ଛତରା ଭଦ୍ରମହିଳାଙ୍କ ସହିତ ତାଙ୍କ ଘରକୁ ଆସିଥିଲା। ସେଇଠୁ ଆରମ୍ଭ ହେଲା ତାର ନୂତନ ଜୀବନ। ଏ ସବୁ ମୁଁ ପରେ ଛତରା ମୁହଁରୁ ଶୁଣିଥିଲି। ଏ ଗଳ୍ପ କିନ୍ତୁ କେବଳ ଛତରାର ନୁହେଁ ଛତରା ଏ ଗଳ୍ପର ଏକ ଅବଲମ୍ବନ ମାତ୍ର, ସେଦିନ ରେଳଯାତ୍ରା ପୂର୍ବରୁ ସୁଭାଷିନୀ ଦେବୀ କଣ ଜାଣିଥିଲେ ଏଡେ ସହଜରେ ତାଙ୍କ କାମ ହୋଇଯିବ।

ସୁଭାଷିନୀ ଦେବୀଙ୍କୁ ମୁଁ ପ୍ରଥମ ଦେଖେ ମୋର ଡାକ୍ତର ବନ୍ଧୁର କ୍ଲିନିକରେ। ବନ୍ଧୁ ପାଖକୁ ଯେତେବେଳେ ଯାଏ ତା ପଛ ପଟର ଗୋଟିଏ ଚେୟାରରେ ବସି ଅପେକ୍ଷା କରେ। ସବୁ ରୋଗୀ ଦେଖା ସରିଲେ ଆମର କଥାବାର୍ତ୍ତା ହୁଏ। ସେଦିନ ରାତି ପ୍ରାୟ ନ'ଅଟା ହେବ ଶେଷ ରୋଗୀଟିକୁ ବନ୍ଧୁ ଦେଖୁଥାଏ ଏହି ସମୟରେ ସୁଭାଷିନୀ ଦେବୀ ଆସିଲେ। ଇଶାରାରେ ତାଙ୍କୁ ବସିବାକୁ କହି ବନ୍ଧୁ ତାର କାମ ସାରୁଥାଏ। ରୋଗୀଟି ଗଲା ପରେ ସୁଭାଷିନୀ ଦେବୀ କହିଲେ, 'ଡାକ୍ତରବାବୁ ମୁଁ ଆଉ ପାରୁନାହିଁ। ବବ୍ଲୁର କଷ୍ଟ ଆଉ ଦେଖି ହେଉନାହିଁ।

— କଣ ଆଉ କରିବେ।

— ଡାୟାଲିସିସ୍ ପରେ ସେ କେମିତି ଝାଁଉଳି ପଡୁଛି।

— ଉପାୟ ନାହିଁ ମ୍ୟାଡାମ୍। ଯେତେଦିନ ସେ ବଂଚିବ ଡାୟାଲିସିସ ଛଡା ଅନ୍ୟ ଉପାୟ ନାହିଁ।

ଆଖି ତଳକୁ କରି ଭଦ୍ରମହିଳା ଦୀର୍ଘ ନିଶ୍ୱାସଟିଏ ଛାଡିଲେ

— ତେବେ, ଆପଣଙ୍କ ପୁଅକୁ ଯଦି ଗୋଟିଏ କିଡନି କେହି ଦାନ କରେ, ହୁଏତ ସେ ସ୍ୱାଭାବିକ ହୋଇ ଯାଇ ପାରେ।

— ଆପଣ ମୋର ଗୋଟିଏ କିଡନି ନିଅନ୍ତୁ।

— ତାହା ସମ୍ଭବ ନୁହେଁ, ଏକରେ, ଆପଣଙ୍କ ବୟସ ଓ ଆପଣଙ୍କ ବ୍ଲଡ ଗ୍ରୁପ୍ ଓ ଆପଣଙ୍କ ପୁଅର ବ୍ଲଡଗ୍ରୁପ୍ ଏକା ନୁହେଁ। ମୁଁ ଆଗରୁ ଦେଖିଛି।

— ଦଶମାସ ଗର୍ଭରେ ଧରି ମୋରି ରକ୍ତ ମାଂସରେ ବଡ ହୋଇ ବବଲୁର ବ୍ଲଡ ଗ୍ରୁପ୍ ଆଉ ମୋର ଏକା ନୁହେଁ। ଆପଣ ଆଉ ଥରେ ପରୀକ୍ଷା କରନ୍ତୁ।

— ଅନେକ କ୍ଷେତ୍ରରେ ସେହିପରି ହୁଏ ମ୍ୟାଡମ। ହୁଏତ ଆପଣଙ୍କ ପରିବାର ବା ଆପଣଙ୍କ ସ୍ୱାମୀ ପରିବାରରେ; ଏବେ ଆପଣଙ୍କ ପୁଅର ଥିବା ବ୍ଲଡ ଗ୍ରୁପ୍ କାହାରି ଥିଲା। ବହୁ ବର୍ଷ ପରେ ପୁଣି ତାହା ଦେଖା ଦେଇଛି। ଏହିପରି ଘଟଣାକୁ ଆମେ ଥ୍ରୋବ୍ୟାକ କହିଥାଉ। ବହୁବର୍ଷ ଲୁଚି ରହି ହଠାତ୍ କୌଣସି ଚରିତ୍ର ଏହିଭଳି ପ୍ରକାଶ ପାଏ।

— ତେବେ ଉପାୟ ?

— ଯଦି କେହି ସହୃଦୟ ବ୍ୟକ୍ତି ଯାହାଙ୍କର ବ୍ଲଡ ଗ୍ରୁପ ଆପଣଙ୍କ ପୁଅ ସହିତ ମ୍ୟାଚ କରିବ ଏବଂ ସେ ଯଦି ଗୋଟିଏ କିଡନି ଦାନ କରନ୍ତି, ତେବେ ଯାଇ ସମ୍ଭବ ହେବ।

— କିଏ କାହିଁକି କାହାର କିଡନି ଦେବ ?

— ଆପଣ ଖବରକାଗଜରେ ପୁଅର ବ୍ଲଡ ଗ୍ରୁପ୍ ଉଲ୍ଲେଖ କରି ବିଜ୍ଞାପନଟିଏ ଦିଅନ୍ତୁ, ସେଥିରେ କିନ୍ତୁ ଟଙ୍କା କଥା ଲେଖିବେ। ଆଜିକାଲି ଅନେକେ କିଡନି ବିକ୍ରି କରୁଛନ୍ତି।

— ଦେଖେ କ'ଣ ହେଉଛି।

— ମୁଣ୍ଡ ତଳକୁ କରି ଭଦ୍ରମହିଳା ଚାଲିଗଲେ।

ବଂଧୁଙ୍କୁ ପଚାରିଲି କିଏ ଏଇ ଭଦ୍ରମହିଳା ? ଦେଖି ବେଶ ସଂଭ୍ରାନ୍ତ ମନେ ହେଉଛି।

— ଶିଳ୍ପପତି ଅରବିନ୍ଦ ମହାପାତ୍ରଙ୍କ ପତ୍ନୀ।

— ଅରବିନ୍ଦ ମହାପାତ୍ର – ଯିଏ,

— ହଁ ସେଇ ଅରବିନ୍ଦ ମହାପାତ୍ର। ତାଙ୍କର ଏକମାତ୍ର ପୁଅର ଦୁଇଟି ଯାକ କିଡନି ଆଫେକଟେଡ। ଏବେ ପ୍ରତି ମାସରେ ଡାୟାଲିସିସ କରିବାକୁ ହେଉଛି।

— କିନ୍ତୁ ଭଦ୍ରମହିଳାଙ୍କୁ ତୁ ଯେଉଁ ଆଶା ଦେଲୁ ସେ କଣ କିଡନି ପାଇବେ ? ଏ କ'ଣ ଆଳୁ ବାଇଗଣ ଯେ ଟଙ୍କା ଦେଇ କିଣି ହେବ ?

— କିଏ ଜାଣେ ଟଙ୍କା ବିନିମୟରେ ହୁଏତ ପାଇପାରନ୍ତି। ସେଦିନ ବଂଧୁଠୁ ବିଦାୟ ନେଇ ମନଟା ବିକ୍ଷିପ୍ତ ହୋଇ ରହିଲା। ଖାଲି ମନେ ହେଉଥାଏ

ଟଙ୍କା ବିନିମୟରେ ଲୋକ କିଡନି ବିକ୍ରି କରିବ ତାପରେ ଲଙ୍ଗସ ହାର୍ଟ ବ୍ରେନ୍। ଟଙ୍କା ପକେଇ ଯଦି ନ ମିଳିଲା ସେତେବେଳେ ଅନ୍ୟ ଉପାୟ ନେବ। ଲୋକେ କିଡନି ବ୍ରେନର ବ୍ୟବସାୟ କରିବେ; ମୁନାଫା ନେବେ- ଯାହାର ବଳ ଅଛି- ଯାହାର ଟଙ୍କା ଅଛି, ସେ ଅନ୍ୟଠାରୁ ଛଡେଇ ନେବ। ଏହା କଣ ବିଜ୍ଞାନର ଆଶୀର୍ବାଦ ?

ତାପରେ ସୁଭାଷିନୀ ଦେବୀଙ୍କ କଥା ମୁଁ ପ୍ରାୟ ଭୁଲି ଯାଇଥିଲି। ସେଦିନ ହଠାତ ମୋ ଡାକ୍ତର ବନ୍ଧୁ ଡକେଇ ପଠେଇଲା। ରାତି କରି ତାର କ୍ଲିନିକ୍‌ରେ ପହଞ୍ଚିଲି। କାମ ସାରି ବନ୍ଧୁ କହିଲା, ''ସୁଭାଷିନୀ ଦେବୀ ତାଙ୍କ ପୁଅ ପାଇଁ କିଡନି ପାଇଛନ୍ତି।'

— କଣ ଟଙ୍କା ବିନିମୟରେ।

'ତାହା ମୁଁ ଜାଣେ ନାହିଁ। ପିଲାଟାକୁ ଯେତେବେଳେ ଆଣିଥିଲେ ଭୀଷଣ ଆନେମିକ ଥିଲା, ଏବେ ଖିଆପିଆ ଔଷଧ ଆଦି ଖାଇ ଫିଟ୍ ହୋଇଗଲାଣି। କାଲି ଅପରେସନ ହେବ।'

— ପିଲାଟା କିଏ ? ତାର ବାପ ମା କେଡେ ଚଣ୍ଡାଳ।

— ଆମର ସେଥିରୁ କଣ ମିଳିବ।

— ତୁ ଗୋଟାଏ ସୁସ୍ଥ ପିଲା ଦେହରୁ କିଡନିଟା କାଟି ନେଇ ତାକୁ ଅସୁସ୍ଥ କରିଦେବୁ।

— ସେଥିରେ ଆଉ ଗୋଟିଏ ଜୀବନ ରକ୍ଷା ହେବ।

— ତୋର ବିବେକ ମନା କରୁନାହିଁ।

— ଜୀବନ ରକ୍ଷା କରିବା ଆମର ଧର୍ମ।

— ଆଉ ଗୋଟିଏ ଜୀବନ ବିନିମୟରେ

— ଗୋଟିଏ କିଡ୍‌ନିରେ କାମ ଚଳିଯିବ। ତାର କୌଣସି ଅସୁବିଧା ହେବ ନାହିଁ।

— ଗୋଟିଏ କିଡନିରେ କାମ ଚଳିଲେ, ଯିଏ ଆମକୁ ଗଢ଼ିଛି ସେ ଏତେ ମୂର୍ଖ ନୁହେଁ ଯେ ଦି ଟା କିଡନି ଆମକୁ ଦିଅନ୍ତା।

ସେଦିନ ଭାରାକ୍ରାନ୍ତ ମନରେ ବନ୍ଧୁ କ୍ଲିନିକ୍‌ରୁ ଫେରି ଆସିଲି। ମନରେ କୌତୁହଳ ଥାଏ। ଶେଷରେ କଣ ହେଲା। ଅଭିମାନରେ ବନ୍ଧୁ କ୍ଲିନିକ୍‌କୁ ଯାଉନଥାଏ। କିନ୍ତୁ ଡାକ୍ତର ଉପରେ କଣ ଅଭିମାନ କରି ହୁଏ ? ରୋଗ କଣ ମାନି ଅଭିମାନ ମାନେ ? ବାଧ୍ୟ ହୋଇ ଦିନେ ଯିବାକୁ ପଡିଲା।

ଇଚ୍ଛାକରି ସେଦିନ ସଅଳ ସଅଳ ଗଲି । ମନେ ମନେ ଭାବୁଥାଏ ପ୍ରେସକ୍ରିପସନ୍ ନେଇ ସଙ୍ଗେ ସଙ୍ଗେ ଫେରି ଆସିବି ।

ମୋତେ ଦେଖି ବଂଧୁ ଇଶାରାରେ ବସିବାକୁ କହିଲା । ବାର ତେର ବର୍ଷର ପିଲାଟାଏ ଟହଲ ଟାପରା କରୁଥାଏ । ରୋଗୀଙ୍କର ନାଁ ଧରି ଡାକୁଥାଏ । ଦେଖି ମନେ ହେଲା ବେଶ ଚାଲାକ ଚତୁର । ରୋଗୀ ଦେଖା ପରେ ବଂଧୁ ପଚାରିଲା, 'କିରେ ଏତେ ଦିନ ଦେଖା ନାହିଁ ।'

—'ତୁମ ପରି କଂସେଇଙ୍କୁ ଦୂରରୁ ଜୁହାର ।' ହୋ ହୋ କରି ବଂଧୁ ହସି ଉଠିଲା

—ଚା ପିଇବୁ । ନା କଂସେଇଠୁ ଚା ବି ପିଇବୁ ନାହିଁ । ଆରେ—ଦ୍ୱି ଟା ଚା ନେଇ ଆ ।

—ପିଲାଟାକୁ ଆଗରୁ ଦେଖି ନଥିଲି ।

—ଏଇ ପିଲାର ଗୋଟିଏ କିଡନି ନେଇ ସୁଭାଷିନୀ ଦେବୀଙ୍କ ପୁଅ ଆଜି ସୁସ୍ଥ ହୋଇଛି ।

—ସୁଭାଷିନୀ ଦେବୀ ଏ ପିଲାଟିକୁ ପାଇଲେ କେଉଁଠୁ ?

—ହସିକରି ବଂଧୁ କହିଲା, 'ତାକୁ ପଚାର । ଗୋଟିଏ ଗଳ୍ପର ଖୋରାକ ପାଇଯିବୁ ।'



# କାୟା ପ୍ରବେଶ

ରବିବାର ଦ୍ୱିପ୍ରହରଟା ମୋର ଏକାନ୍ତ ନିଜସ୍ୱ । ଏହି ସମୟରେ ମୁଁ କାହାରି ଉପସ୍ଥିତି ବରଦାସ୍ତ କରିପାରେ ନାହିଁ । ମୁଁ ଥାଏ ମୋ ନିଜସ୍ୱ ଜଗତରେ, ଝରକା ଦେଇ ଆକାଶ ଦେଖେ, କେତେବେଳେ ସିଲିଂ ଫ୍ୟାନ, ଅଳସ ଆଖିରେ ଖବର କାଗଜର ଲେଖା ଯୋଡ଼ି ହୋଇଯାଏ । ଶବ୍ଦମାନ ଚଳଶକ୍ତିହୀନ ହୋଇଯାଆନ୍ତି ।

ଏହିପରି ଏକ ରବିବାର ଦ୍ୱିପ୍ରହରରେ ଖବର କାଗଜ ବିଜ୍ଞାପନ ପୃଷ୍ଠାରେ ଛୋଟ ବିଜ୍ଞାପନଟିଏ ଆଖିରେ ପଡ଼ିଲା । ଆମ ପଡ଼ୋଶୀ ଛୋଟ ରାଷ୍ଟ୍ରଟିଏ ବିଜ୍ଞାପନ ଦେଇଛି; ଆଧୁନିକ ହୋଟେଲ, କ୍ୟାସିନୋ, ହାର୍ବାଲ ମ୍ୟାସେଜ ପାରଲୋର ଆଦିର ବର୍ଣ୍ଣନା, ତେବେ ତଳକୁ ଢ଼ଳିଲା (ଇଟାଲିକ୍ସ) ଅକ୍ଷରରେ ଲେଖା ହୋଇଛି ଭ୍ରମଣକାରୀ ଇଚ୍ଛା କଲେ ଶରୀର ବଦଳ କରିପାରିବେ । ସମସ୍ତ ପ୍ରକାର ଶରୀର ସ୍ତ୍ରୀ, ପୁରୁଷ, ବାଳକ, କିଶୋରଙ୍କ ଶରୀର ଭଡ଼ାରେ ମିଳେ । ସୁଯୋଗ କେବଳ ବିଦେଶୀମାନଙ୍କ ପାଇଁ । ଅଦ୍ଭୁତ ଲେଖା । ଦୁଇ ତିନିଥର ପଢ଼ିଲି । ପ୍ରଥମେ ମନେହେଲା ପୃଥିବୀର ଆଦିମତମ ବ୍ୟବସାୟରେ ନୂତନତ୍ୱ ଆଣିବା ପାଇଁ ଅଥବା ଖବର କାଗଜ ଉପଯୋଗୀ କରିବା ପାଇଁ ଏଭଳି ଲେଖା ହୋଇଛି । ପେପର ବନ୍ଦ କରି ଆଖି ମୁଦିଲି । ସେଇ କଥା ଗୁଡ଼ାକ ପୁଣି ଫେରି ଆସିଲା । ସଂଧ୍ୟାରେ ଲେଖାଟି ବନ୍ଧୁମାନଙ୍କୁ ଦେଖେଇଲି । ବନ୍ଧୁମାନଙ୍କ ମେଳରେ ବିଜ୍ଞାପନର ତାତ୍ପର୍ଯ୍ୟ ଆଲୋଚନା ହେଲା । ସମସ୍ତେ ଶରୀର ବଦଳ କଥାଟାକୁ ହସରେ ଉଡ଼େଇ ଦେଇ କହିଲେ, ଏଇଟା ଚୋର ସେଇ ଜଳନ୍ଧରର ପନ୍ଦର ଟଙ୍କିଆ ରେଡ଼ିଓ ବିଜ୍ଞାପନ- ଫାଲତୁ । ବନ୍ଧୁମାନଙ୍କ କଥା ମନପୁତ ହେଲା ନାହିଁ । କେବଳ ମନେହେଲା ଶରୀର ବଦଳ କ'ଣ ଏକାନ୍ତ ଅସମ୍ଭବ । ଆମ ଆଶା ଆକାଂକ୍ଷାର ପ୍ରତିଭୂ ଯଯାତି ସଂତାନର ଶରୀର ନେଇଥିଲେ । ଆଚାର୍ଯ୍ୟ ଶଙ୍କର ଅନ୍ୟ ଶରୀରରେ ପ୍ରବେଶ କରିଥିଲେ । ଏଇତ ସେଦିନ ରାଜସ୍ଥାନରେ ଜଣବୀର ଲାଲ ଜାଠ ମରିଯିବାର କେଇ ଘଣ୍ଟା ପରେ ପୁଣି ଜିଇଁ ଉଠିଲା ଅନ୍ୟ ଏକ ଶରୀର ମଧ୍ୟରେ । ସ୍ୱାମୀ ଅଭେଦାନନ୍ଦଙ୍କ 'ଲାଇଫ୍ ଆଫ୍ଟର୍ ଡେଥ୍' ବହିରେ ପଢ଼ିଛି ବିଦେହୀ ଆତ୍ମା ଅନ୍ୟ ଶରୀରରେ ପ୍ରବେଶ କରନ୍ତି ଏକ ନୂତନ ସତ୍ତା ନେଇ । ମହାପୁରୁଷମାନେ ଇଚ୍ଛାନୁସାରେ ଶରୀର ତ୍ୟାଗ କରନ୍ତି । ସେମାନଙ୍କ ପାଇଁ ଶରୀର ତ୍ୟାଗ ଲୁଗାପଟା ଛାଡ଼ିଲା ପରି । ତେବେ କ'ଣ କୌଣସି ମହାପୁରୁଷ ଏଇ ଗୁଢ଼ ପଦ୍ଧତିକୁ ସର୍ବସାଧାରଣ କରି ଦେଇଛନ୍ତି ।

ପରଦିନ ବିଜ୍ଞାପନ ଦେଇଥିବା ସଂସ୍ଥାକୁ ଚିଠିଟିଏ ଲେଖିଲି । ପନ୍ଦର ଦିନ ଭିତରେ ଉତ୍ତର ଆସିଲା । ସରକାରୀ ମୋହର ଲଗା ଚିଠି ସାଙ୍ଗରେ ଗୋଟିଏ ଗ୍ଲସିପେପରରେ ଚକଚକିଆ ବ୍ରୋସିଅର । ବ୍ରୋସିଅରଟି ସେଠାକାର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହାର୍‌ମୋନିଅସ୍ ଡେଭେଲପ୍‌ମେଣ୍ଟ ଅଫ୍ ମ୍ୟାନ୍‌ରେ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ସମ୍ୟକ ତଥ୍ୟ ମାନ ଦିଆ ହୋଇଛି । ବ୍ରୋସିଅରଟି ପଢ଼ି ଗୋଟିଏ କଥା ବୁଝିଲି, ସେଠାରେ ସେମାନେ ମଣିଷ ଭିତରେ ଯେଉଁ ମଣିଷଟି ରହିଛି ତାର ସ୍ୱରୂପ ଓ ପରିଚୟ ଜାଣିବାପାଇଁ ବିଭିନ୍ନ ଉପାୟମାନ ବାହାର କରିଛନ୍ତି । ପ୍ରାଚ୍ୟର ଯୋଗୀ, ତାନ୍ତ୍ରିକ, ତିବ୍ବତୀୟ ଲାମା, ପାଶ୍ଚାତ୍ୟ ଦେଶର ମନୋବୈଜ୍ଞାନିକ, ଚିକିତ୍ସକ, ବୈଜ୍ଞାନିକ ଆଦିଙ୍କ ମିଳିତ ଉଦ୍ୟମରେ ସେମାନେ ମଣିଷ ଭିତରର ଅଣଆସ୍ୱାଦିତ ଶକ୍ତିର ଉନ୍ମେଷ କରୁଛନ୍ତି । ସେମାନଙ୍କ କହିବା କଥା ଥରେ ମଣିଷର ଅନ୍ତର୍ନିହିତ ଶକ୍ତିର ସୁଇଚ ଯଦି ଅନ କରିଦିଆଯାଏ ତେବେ ପାର୍ଥିବ ଜଗତର ସମସ୍ତ କାର୍ଯ୍ୟ ଏପରିକି ଶରୀର ବଦଳ ଆଦି କାମ ସାର୍ଟ ପ୍ୟାଣ୍ଟ ବଦଳିବା ପରି ସହଜ । ଲେଖା ଯୁକ୍ତିପୂର୍ଣ୍ଣ, ଅକାଟ୍ୟ । ମନ କଥା ମନରେ ଥାଏ । କାହା ସହ ବା ଆଲୋଚନା କରିବି ? ସାଧୁ ସନ୍ଥଙ୍କ ଜୀବନୀରେ ପଢ଼ିଛି ଯୋଗ ଦ୍ୱାରା ସେମାନେ ସୁପ୍ତ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାନ୍ତି । ଥରେ ସେଇ ଶକ୍ତି ଜାଗ୍ରତ ହୋଇ ମୂଳାଧାର ଛାଡ଼ି ସହସ୍ରାରେ ପହଞ୍ଚିଲେ ହୃଦୟ ପଦ୍ମର ସହସ୍ର ପାଖୁଡ଼ା ଖୋଲିଯାଏ । ସେତେବେଳ ଅନ୍ତର ପୁରୁଷ ଅନନ୍ତ ଶୟନରୁ ଜାଗ୍ରତ ହୁଅନ୍ତି । ଅନ୍ତର ପୁରୁଷଙ୍କ ନିଦ୍ରା ଭଙ୍ଗ ହେଲେ ଜାଗତିକ କୌଣସି ବସ୍ତୁ ଆଉ ମାନବ ପାଇଁ ଦୁର୍ଲଭ ନୁହେଁ । ସେତେବେଳେ ସେମାନେ ଆବଶ୍ୟକ ହେଲେ ପଞ୍ଚଭୂତର ଶରୀର ତ୍ୟାଗ କରି ନୂତନ ଶରୀର ଗ୍ରହଣ କରନ୍ତି ।

ବିଜ୍ଞାନୀମାନେ ମଣିଷର ଏହି ସୁପ୍ତ ଶକ୍ତିର ଆଧାରକୁ କହୁଛନ୍ତି 'କମ୍‌ପ୍ଲେକ୍ସ ଏକ୍ସ' । ସେମାନେ କହନ୍ତି ବଞ୍ଚିବା ପାଇଁ ଆମେ କେତେକ ନିର୍ଦ୍ଦିଷ୍ଟ ପ୍ରୋଟିନ୍‌ର ସାହାଯ୍ୟ ନେଇଥାଉ, ସେଇ ପ୍ରୋଟିନ ମାନଙ୍କ ତିଆରି ନକ୍‌ସା ରହିଛି, ଆମ ଶରୀରର ବିଭିନ୍ନ କୋଷରେ ଥିବା କ୍ରୋମୋଜୋମରେ । କ୍ରୋମୋଜୋମ୍‌ରେ ଥିବା ନକ୍‌ସାର ନାମ 'ଜିନ୍' । ସବୁଠାରୁ ମଜା କଥା ଆମ ଶରୀରରେ ଯେତେ 'ଜିନ୍' ରହିଛି ସେଥିରୁ ପଚାଶ ଭାଗରୁ ଅଧିକ ଜିନ ସୁପ୍ତ ବା ଇନାକ୍ଟିଭ୍ । ସେଇ ସମସ୍ତ ସୁପ୍ତ ଜିନ ଯଦି କୌଣସି ଉପାୟରେ ଜାଗ୍ରତ ହୁଏ ତେବେ ଶରୀରରେ ଅନେକ ନୂତନ ପ୍ରୋଟିନ ମାନ ତିଆରି ହେବ, ଫଳରେ ମଣିଷର ଶାରିରୀକ ତଥା ମାନସିକ କ୍ଷମତା ଅନେକ ବଢ଼ିଯିବ । ତାର ଅନେକ ସୁପ୍ତ ଚେତନାର ମଧ ଉନ୍ମେଷ ହେବ । ସତୁରୀ ଦଶକରେ ଫାଇଭ୍ ଆଜାସାଇଟିଡିନ୍ ନାମକ ଯୌଗ ବା କମ୍ପାଉଣ୍ଡ ବ୍ୟବହାର କରି ବିଜ୍ଞାନୀମାନେ ଏ ଦିଗରେ କିଛିଟା ସଫଳତା ପାଇଥିଲେ । ତେବେ କ'ଣ ସେଇଭଳି କିଛି ଯୌଗର ସନ୍ଧାନ ପାଇ ସେ ରୁଦ୍ଧ ଦ୍ୱାର ଖୋଲିଯାଇଛି ।

କୌତୂହଳ ଦିନକୁ ଦିନ ବଢ଼ିବାକୁ ଲାଗିଲା । ଯିବାର ସମସ୍ତ ବ୍ୟବସ୍ଥା ପକ୍କା କରି ସେମାନଙ୍କୁ ଚିଠି ଦେଲି । ସଙ୍ଗେ ସଙ୍ଗେ ଉତ୍ତର ଆସିଗଲା ।

'ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହାର୍‌ମୋନିଅସ୍ ଡେଭେଲପ୍‌ମେଣ୍ଟ ଅଫ୍ ମ୍ୟାନ୍'ର ମୁଖ୍ୟ କାର୍ଯ୍ୟାଳୟ ସହରଠୁ ପ୍ରାୟ ପନ୍ଦର କୋଡିଏ କିଲୋମିଟର ଦୂରରେ ନିକଟସ୍ଥ ସହରରେ ରହିଛି ସେମାନଙ୍କ ଯୋଗାଯୋଗ ଅଫିସ । ସେଠାରେ ମୋର ସମସ୍ତ ଆନୁସଙ୍ଗିକ କାଗଜପତ୍ରର ଯାଞ୍ଚ ହୋଇଗଲା । କାଗଜପତ୍ର ଫେରେଇ ଦେଇ ଟେବୁଲ ଅପର ପଟେ ବସିଥିବା ବ୍ୟକ୍ତି ଜଣକ ପଚାରିଲେ, 'ଆପଣ କି ଧରଣର କୋର୍ସ ନେବେ ?'

ପଚାରିଲି, 'ଅର୍ଥାତ୍ ।'

'ଶାରିରୀକ ନା ମାନସିକ ଉନ୍ନତି ଅବା ଶରୀର ବଦଳ ?'

'ଅସଲରେ ମୁଁ ଦେଖିବାକୁ ଆସିଛି, ନିଜେ କୌଣସି କୋର୍ସ ନେବାକୁ ଆସିନାହିଁ ।'

ଭଦ୍ରଲୋକ ମୋ ମୁହଁକୁ ଅନେଇଲେ । ପେନ୍‌ଟି କପାଳରେ ଛୁଇଁ କହିଲେ, 'ଏତେ ଦୂରରୁ ଆସିଲେ- କୋର୍ସ ନେବେ ନାହିଁ । ତେବେତ ଆପଣ ଇନ୍‌ଷ୍ଟିଚ୍ୟୁଟ୍ ଭିତରକୁ ଯାଇ ପାରିବେ ନାହିଁ । ତା'ପରେ କ'ଣ ଭାବିଲେ କେଜାଣି ମୋର କାଗଜପତ୍ରରେ ଥିବା ଶିକ୍ଷାଗତ ଯୋଗ୍ୟତା ଆଦି ଦେଖି କହିଲେ, 'ଆପଣ ମଲ୍ୟୁକ୍ୟୁଲାର ବାୟୋଲଜିର ଛାତ୍ର' । ମୁଁ ତାଙ୍କ କଥାରେ ହଁ ଭରିଲି ।

'ତେବେ ମୁଁ ଆପଣଙ୍କୁ ମଲ୍ୟୁକ୍ୟୁଲାର ବାୟୋଲଜି ଲାବୋରଟୋରି ଯିବା ପାଇଁ ପାସ୍ ଦେଉଛି । ସେଠାରେ ଆପଣ ଡକ୍‌ଟର ଚ୍ୟାଙ୍ଗ୍‌ଙ୍କ ସହ ସାକ୍ଷାତ କରିବେ । ଏହା କହି ଭଦ୍ରଲୋକ ଫୋନ୍‌ରେ କଥାବାର୍ତ୍ତା ହେଲେ । ପରେ ଫୋନ୍ ଥୋଇ ଦେଇ କହିଲେ 'ଡକ୍ଟର ଚ୍ୟାଙ୍ଗ୍‌କୁ କହିଲି ସେ ଆପଣଙ୍କ ପାଇଁ ଅପେକ୍ଷା କରୁଛନ୍ତି ।' ତା'ପରେ ମୋତେ ପାସ ଖଣ୍ଡେ ବଢ଼େଇ ଦେଇ କହିଲେ, 'ଗାଡ଼ି ନମ୍ବର ପାସ୍‌ରେ ଲେଖାହୋଇଛି ଆପଣ ଗାଡ଼ିରେ ଅପେକ୍ଷା କରନ୍ତୁ ।'

ଅଫିସ୍ ବାହାରେ ଇନ୍‌ଷ୍ଟିଚ୍ୟୁଟ୍‌ର ନିଜସ୍ୱ ଭ୍ୟାନ ତିନି ଚାରିଟା ଠିଆ ହୋଇଥାଏ । ମୁଁ ନିର୍ଦ୍ଦିଷ୍ଟ ଭ୍ୟାନରେ ଯାଇ ବସିଲି । ମୋତେ ନେଇ ଭ୍ୟାନରେ ଛଅ ଜଣ- ଦୁଇ ଜଣ ଦମ୍ପତି ଯୋଡ଼ି ଯୋଡ଼ି ହୋଇ ବସିଥାନ୍ତି । ଜଣେ ଭଦ୍ରଲୋକ ଏକୁଟିଆ ବସି ଖବର କାଗଜ ପଢୁଥାନ୍ତି । ମୁଁ ତାଙ୍କ ପାଖ ସିଟ୍‌ରେ ବସି ପାରିବି କି ନାହିଁ ପଚାରିଲାରୁ ଭଦ୍ରଲୋକ ମୁଣ୍ଡ ଟୁଙ୍ଗାରି ସମ୍ମତି ଦେଇ ପୁଣି ଖବର କାଗଜରେ ମନୋନିବେଶ କଲେ । ଛଅ ଜଣଙ୍କୁ ନେଇ ଗାଡ଼ି ଛାଡ଼ିଲା । ଇନ୍‌ଷ୍ଟିଚ୍ୟୁଟ୍‌ଟି ପହଞ୍ଚିବାକୁ ଆମକୁ ପ୍ରାୟ ଅଧଘଣ୍ଟା ଲାଗିଲା । ଇନ୍‌ଷ୍ଟିଚ୍ୟୁଟ୍ ଫାଟକ ପାଖରେ ଆମର କାଗଜପତ୍ର ଆଉ ଗୋଟିଏ ପରସ୍ତ ଯାଞ୍ଚ ହେଲା । ମୋର ସହଯାତ୍ରୀ ପାଞ୍ଚଜଣଙ୍କୁ ସେମାନେ ପ୍ରଥମେ ଛାଡ଼ିଦେଲେ ମୋତେ କହିଲେ ଅପେକ୍ଷା କରିବା ପାଇଁ । ମୁଁ ରିସେପ୍‌ସନ୍ ବାହାରେ ଠିଆ ହୋଇ ଏଣେ ତେଣେ ଦେଖୁଥାଏ ଜଣେ ଭଦ୍ରଲୋକ ସ୍କୁଟରରେ ଆସି ମୋ ପାଖରେ ପହଞ୍ଚିଲେ । ପଚାରିଲେ ଆପଣ-

ମୁଁ ସମ୍ମତି ସୂଚକ ମୁଣ୍ଡ ଟୁଙ୍ଗାରିଲି ।

ଭଦ୍ରଲୋକ ହାତ ବଢ଼େଇ ନିଜ ପରିଚୟ ଦେଲେ । ଡକ୍ଟର ଶର୍ମା । ଇଉ. ପି.ର ଲୋକ । ଇଲିଓନିସ୍‌ରୁ ପି.ଏଚ୍.ଡି. କଲାପରେ ଏଠାକାର ମଲ୍ୟୁକ୍ୟୁଲାର ବାୟୋଲଜି ଲ୍ୟାବରେ ରିସର୍ଚ୍ଚ ଆସୋସିଏଟ୍ ଅଛନ୍ତି । ପାଞ୍ଚମିନିଟ୍ ଭିତରେ ଆମେ ପହଞ୍ଚିଗଲୁ ମଲ୍ୟୁକ୍ୟୁଲାର ବାୟୋଲଜି ଲ୍ୟାବ ପୋର୍ଟିକୋରେ । ପୋର୍ଟିକୋ ପାର ହୋଇ ବିରାଟ ଲାଉଞ୍ଜ, ସେଠାରେ ଥିବା ଗେଷ୍ଟ ରେଜିଷ୍ଟାରରେ ନାଁ, କାହା ସହ ଦେଖା କରିବି ଦସ୍ତଖତ ପ୍ରଭୃତି କରିବାକୁ ହେଲା । ଲାଉଞ୍ଜରୁ ଲମ୍ବିଛି କରିଡୋର୍ । ଦୁଇ ପାଖରେ ବିଭିନ୍ନ ଲ୍ୟାବରେଟୋରୀ, ଇନ୍‌ଷ୍ଟ୍ରୁମେଣ୍ଟେସନ ରୁମ, ଟିସ୍ୟୁକଲଚର, ଇ.ଏମ. ରୁମ, ଡାର୍କ ରୁମ, ଅଟୋକ୍ଲେଭ ଆଦି ରୁମ । ଶେଷ ମୁଣ୍ଡରେ ଡକ୍ଟର ଚ୍ୟାଙ୍ଗଙ୍କ କ୍ୟାବିନ । ଡକ୍ଟର ଶର୍ମା ମୋତେ ଡକ୍ଟର ଚ୍ୟାଙ୍ଗଙ୍କ ସହ ପରିଚୟ କରେଇ ନିଜ କାମରେ ଚାଲିଗଲେ ।

ଡକ୍ଟର ଚ୍ୟାଙ୍ଗଙ୍କ ବୟସ ପଚାଶ ପାଖାପାଖି । ଆଖିରେ ରିମ୍‌ଲେସ ଚଶମା । ମୋତେ ପ୍ରଥମ ପ୍ରଶ୍ନ କଲେ, 'ଆପଣ କଣ ଡକ୍ଟର ରାଓଙ୍କ ସହ କାମ କରୁଥିଲେ । ମୁଁ ଆପଣଙ୍କ ପିଏନଏସର ପେପରଟା ଦେଖିଛି । ଖୁବ୍ ଭଲ କାମ । ତା'ପରେ ଆଉ ପରସ୍ୟୁ କଲେ ନାହିଁ । ମୁଁ ହସିଲି, କହିଲି ଠିକ୍ ସୁବିଧା ହେଲାନାହିଁ । ତା'ପରେ ମୋତେ ଆଉ କିଛି କହିବାକୁ ନ ଦେଇ ଡକ୍ଟର ଚ୍ୟାଙ୍ଗ କିଭଳି କେଉଁଠାରେ ଡକ୍ଟର ରାଓଙ୍କ ସହ ପରିଚୟ ହୋଇଥିଲା କେଉଁ କନ୍‌ଫରେନ୍ସରେ ସେ ଡକ୍ଟର ରାଓଙ୍କ ଲେଗ ପୁଲ କରିଥିଲେ କହି ହସିବାକୁ ଲାଗିଲେ । କିଛି ସମୟ ପରେ କଫି ଆସିଲା । ଡକ୍ଟର ଚ୍ୟାଙ୍ଗ କଫି ସାରି ଇଣ୍ଟରକମରେ ଡକ୍ଟର ଶର୍ମାଙ୍କୁ ଡକେଇଲେ । ମୋତେ କହିଲେ, 'ଡକ୍ଟର ଶର୍ମା ଆପଣଙ୍କୁ ସବୁ ଦେଖେଇଦେବେ ।'

ଡକ୍ଟର ଶର୍ମା କାମ କରନ୍ତି ଟିସ୍ୟୁ କଲଚର ସେକ୍‌ସନରେ । ଏବେ ଜିନ କ୍ଲୋନିଂ କରୁଛନ୍ତି । ଡକ୍ଟର ଶର୍ମା ତାଙ୍କ ପି. ସି. (ପର୍ସନାଲ କମ୍ପ୍ୟୁଟର) ପାଖରେ ମୋତେ ବସେଇ ଦେଇ କହିଲେ, 'ଆପଣ ଭିଡିଓ ଗେମ୍ ଖେଳନ୍ତୁ ମୁଁ ଟିକେ ହାତ କାମଟା ସାରିଦିଏ । ତା'ପରେ ଏକାଠି ଲଞ୍ଚ କରିବା ।'

ପି.ସି.ରେ ଭିଡିଓ ଗେମ କ'ଣ ଖେଳିବି । ମୁଁ ଲଗା ହୋଇଥିବା ମେମୋରି କଲ୍ କଲି । ଶାଗୁଆ ଅକ୍ଷରଗୁଡ଼ାକ ଜଳ ଜଳ ହୋଇ ପର୍ଦ୍ଦାରେ ଭାସି ଉଠିଲା । ପ୍ରଥମେ ବିଭିନ୍ନ ମନୋଗ୍ରାଫର ଇଣ୍ଡେକ୍ସ ନମ୍ବର, ତା'ପରେ କେଉଁ ଲିକ୍ୟୁଇଡ୍ ନାଇଟ୍ରୋଜେନ୍ କ୍ୟାନରେ କେଉଁ ସ୍ୟାମ୍ପଲ ରହିଛି ତା'ର ହିସାବ । ପରେ ପରେ ରହିଛି ପୃଥିବୀର ବିଭିନ୍ନ ପ୍ରସିଦ୍ଧ ଲୋକମାନଙ୍କ କେସ ହିଷ୍ଟ୍ରି । ସେମାନଙ୍କ ଜେନିକ୍‌ମେକ୍‌ଆପ୍ ଲେଖା ଗୁଡ଼ିକ ଅଳସ ଆଖିରେ ଦେଖୁଥାଏ । ଏଟିସିଜି ଅକ୍ଷର ଗୁଡ଼ିଏ ଆସୁଥାଏ ଯାଉଥାଏ । ଏଡମଣ୍ଡ ଫିଲିପ୍ ନାମରେ କୌଣସି ଏକ ବ୍ୟକ୍ତିଙ୍କ କେସ୍ ହିଷ୍ଟ୍ରିଟା ବଡ଼ ଅଦ୍ଭୁତ । ଭଦ୍ରଲୋକଙ୍କ ହୃଦୟଟି ଛାତିର ଡାହାଣପଟେ । କିଡନି ଓ ଲିଭରର କ୍ଷମତା ଅନ୍ୟ ପାଞ୍ଚଟା ଲୋକଙ୍କଠୁ ଯଥେଷ୍ଟ ଅଧିକ । ସବୁଠାରୁ ଆଶ୍ଚର୍ଯ୍ୟ ଭଦ୍ରଲୋକଙ୍କ ଦେଖିବା ଓ ଶୁଣିବାର କ୍ଷମତା । ଯେଉଁ ଶବ୍ଦ

ସାଧାରଣ କାନ ଶୁଣିପାରେ ନାହିଁ ଭଦ୍ରଲୋକ ସେହି ଶବ୍ଦ ଶୁଣି ପାରନ୍ତି । ମନର ଭାବ ଶବ୍ଦରେ ପ୍ରକାଶ କଲା ପୂର୍ବରୁ ଭଦ୍ରଲୋକ ତାହା ଜାଣିପାରନ୍ତି । ମନେ ମନେ ଭାବିଲି ଏଥିରେ ଆଉ ନୂତନତ୍ୱ କ'ଣ ? ସାଧନାର ପ୍ରଥମ ସୋପାନରେ ସାଧକ ଅନେକ ବିଭୂତି ସିଦ୍ଧି ଆଦି ଲାଭ କରିଥାଏ । ଏଡମଣ୍ଡ ଫିଲିପ୍‌ର ଜେନିକ-ମେକ୍‌ଅପ୍ ପୁଣି ଥରେ ଦେଖିଲି, କିଛି ଆଖି ଦୁରୁଶିଆ ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କଲି ।

ଏହି ସମୟରେ ଡକ୍‌ଟର ଶର୍ମା ଆସି ପହଞ୍ଚିଲେ । ପଚାରିଲେ, 'କ'ଣ ଦେଖୁଥିଲେ ?'

'ଏଡ୍‌ମଣ୍ଡ ଫିଲିପ । କେଉଁଠାର ଲୋକ ?'

'ଗୋଟାଏ ଜିନିୟସ୍ କ୍ରିମିନାଲ ।'

ହସିକରି କହିଲି, 'ତେବେ ଏଡ୍‌ମଣ୍ଡ ଫିଲିପ ଭଳି ଲୋକ ଅଛନ୍ତି ବୋଲି ପ୍ରକୃତିର ରହସ୍ୟ ଆମେ ବୁଝିପାରୁଛୁ ।' ଡକ୍‌ଟର ଶର୍ମା କହିଲେ, 'ଫିଲିପ୍‌ର ୧୪ ନମ୍ବର କ୍ରୋମୋଜୋମଟି ଦେଖିଲେ ।'

*'କିଛି ଗୋଟାଏ ଟ୍ରାନ୍ସଲୋକେସନ ହେଲାପରି ମନେହେଲା ।'*

ସେଇ ଜିନ ମୁଁ କ୍ଲୋନ୍ କରୁଛି-'

ମନେ ମନେ ଭାବିଲି ଏହି ଭଳି କିଛି ବ୍ୟତିକ୍ରମ ଜିନ ଓ ପ୍ରୋଟିନର ସନ୍ଧାନ ପାଇଲେ ମଣିଷର କ୍ଷମତା ନିଶ୍ଚୟ ବଢ଼ିଯିବ । ସେତେବେଳେ ସେ ମାନବରୁ ଅତିମାନବ ହେବ ।

ଆମେ ଲ୍ୟାବରେଟୋରୀରୁ ବାହାରି ପହଞ୍ଚିଲୁ ଇନ୍‌ଷ୍ଟିଚ୍ୟୁଟ୍ କ୍ୟାଣ୍ଟିନ୍‌ରେ । ସେଠାରୁ ଲଞ୍ଚ ସାରି ଫେରିଲାବେଳେ ଡକ୍‌ଟର ଶର୍ମାଙ୍କୁ ପଚାରିଲି, 'ଏଠାରେ ଶରୀର ବଦଳ କରିବା କଥା ଯାହା ଆପଣଙ୍କ ଇନ୍‌ଷ୍ଟିଚ୍ୟୁଟ୍ ବ୍ରୋସିଅର୍‌ରେ ଲେଖା ହୋଇଛି କ'ଣ ସତ ? ନା କେବଳ ଟ୍ୟୁରିଷ୍ଟ ଆକର୍ଷଣ କରିବାର ଏକ ବିଜ୍ଞାପନ ?' ଡକ୍ଟର ଶର୍ମା ହସି କହିଲେ, 'ଆପଣ କ'ଣ ବିଶ୍ୱାସ କରିବେ ? ତାଠୁ ନିଜେ ସବୁ ଦେଖି ଆସନ୍ତୁ ।'

ପଚାରିଲି 'କେଉଁଠି ହେଉଛି ?'

ମୁଁ ଆପଣଙ୍କୁ ନେଇଯିବି । ତେବେ ଶରୀର ବଦଳ ସନ୍ଧ୍ୟାବେଳେ ହୁଏ । ସେହି ସମୟରେ ଆପଣଙ୍କୁ ଯିବାକୁ ହେବ । ଡକ୍ଟର ଶର୍ମାଙ୍କ ସହ ଆଉ ବିଶେଷ କଥାବାର୍ତ୍ତା ହେଲା ନାହିଁ । ମୋତେ ଇନ୍‌ଷ୍ଟିଚ୍ୟୁଟ୍ ଲାଇବ୍ରେରୀରେ ଛାଡ଼ି ଦେଇ ସେ ତାଙ୍କ କାମରେ ଚାଲିଗଲେ । ଗଲାବେଳେ କହିଗଲେ ସନ୍ଧ୍ୟା ହେଲେ ଆସିବେ ।

ସନ୍ଧ୍ୟା ହେବାକୁ ଆହୁରି ତିନିଘଣ୍ଟା । ଲାଇବ୍ରେରୀର ଗୋଟିଏ କଣରେ ବସି ଜର୍ନାଲ ପୃଷ୍ଠା ଓଲଟାଉ ଓଲଟାଉ ସମୟ କଟିଗଲା । ଖରା ଗଡ଼ିଲାରୁ ଲାଇବ୍ରେରୀ ବାହାରେ ଏପଟ ସେପଟ ହେଉଛି ଡକ୍ଟର ଶର୍ମା ଆସି ପହଞ୍ଚିଗଲେ । କହିଲେ, 'ଚାଲନ୍ତୁ' ।

ଆମେ ଦୁହେଁ ଚାଲି ଚାଲି ଓରିଏଣ୍ଟାଲ ମିସଟିକ ରିସର୍ଚ୍ଚ ସେଣ୍ଟରଠି ପହଞ୍ଚିଲୁ । ସେଣ୍ଟର

ବାହାରେ ଥିବା ବଗିଚାରେ ଲୋକ ପ୍ରାଣାୟମ, ଆସନ ଆଦି କରୁଥାନ୍ତି । ରିସେପ୍‌ସନ କାଉଣ୍ଟରରେ ବସିଥିବା ଭଦ୍ରଲୋକଙ୍କ ସହ ଡକ୍ଟର ଶର୍ମା କଥାହେଲେ । ତା'ପରେ ଆମେ ଦୁହେଁ ଲମ୍ବ କରିଡୋର ଦେଇ ଆଗେଇ ଚାଲିଲୁ । ହସପିଟାଲରେ ଅପରେସନ୍ ଥିଏଟର ଯେଉଁଭଳି ଭିତରକୁ ଥାଏ ଓ ସେଠାକୁ ଯିବାକୁ ହେଲେ ଗୋଟିଏ ଦି'ଟା ବଖରା ଦେଇ ଯିବାକୁ ହୁଏ, ଏଠାରେ ମଧ୍ୟ ସେଇଭଳି ବ୍ୟବସ୍ଥା, ତେବେ ଅପରେସନ ଥିଏଟର ଭିତରେ ଡାକ୍ତରମାନେ କ'ଣ କରନ୍ତି ବାହାରକୁ ଦେଖାଯାଏ ନାହିଁ । ଏଠାରେ କାଚର ଘର, ତେଣୁ ଥିଏଟର ଭିତରଟା ପରିଷ୍କାର ଦେଖାଯାଉଛି । ଘର ଭିତରେ କୌଣସି ଆସବାବ ନାହିଁ । କେବଳ ଗୋଟାଏ ଗାଲିଚା ପରା ହୋଇଛି । ଥିଏଟର ବାହାରେ ଅପେକ୍ଷା କରିଥିବା ଲୋକମାନଙ୍କ ଉପରେ ଆଖି ବୁଲେଇ ଆଣୁ ଆଣୁ ଜଣଙ୍କଠି ମୋ ଆଖି ଥମକି ଗଲା । ପରିଚିତ ମୁହଁ । ଖବର କାଗଜରେ ଭଦ୍ରଲୋକଙ୍କ ଛବି କେତେଥର ଦେଖିଛି । ସଭାରେ ତାଙ୍କର ଭାଷଣ ଶୁଣିଛି । ଭଦ୍ରଲୋକ ରାଜନୀତି କରନ୍ତି । ଗତ ନିର୍ବାଚନରେ ଜନାଦେଶ ପାଇନାହାନ୍ତି । ସେଇ ବୀରବାବୁଙ୍କୁ ଏଭଳି ଏକ ପରିବେଶରେ ଦେଖିବି ସ୍ୱପ୍ନରେ ଭାବି ନ ଥିଲି । ମନେ ପଡ଼ିଲା ସେ ଏବେ କ'ଣ ଗୋଟାଏ ପାର୍ଲିଆମେଣ୍ଟାରି କମିଟିର ମେମ୍ବର । ରାଜ୍ୟସଭା ଯିବା ପାଇଁ ଲବି କରୁଛନ୍ତି । କ୍ଷମତାରେ ନ ଥାଇ ମଧ୍ୟ ପୂର୍ବ ପ୍ରତାପ କମି ନାହିଁ । ବୀରବାବୁଙ୍କ ବୟସ ଷାଠିଏ ପଅଁଷଠି ହେବ । ବେକ ବୋଲି କିଛି ନାହିଁ । ମୁଣ୍ଡଟି ଗୋଟିଏ ଆଳୁ ପରି ବିରାଟ ଶରୀର ଉପରେ ବସିଛି । ବେକରେ ସୁନା ଚେନ, ଆଖିରେ ସୁନା ଫ୍ରେମ୍‌ରେ ଚଶମା । ଗେଣ୍ଡା ନାକ ତଳକୁ ବହଳିଆ ଓଠ । ବୀରବାବୁଙ୍କ ଓଠରେ ପରିଚିତ ହସ । ଯାହାର ଅର୍ଥ ଅନେକ । ସେ ହସରେ ରହିଛି ଅନୁକମ୍ପା, ତାସଲ୍ୟ, ବରାଭୟ । ହସିଲେ ଆଖିତଳ ମାଂସପେଶୀ କୁଞ୍ଚ ହୋଇ ଫୁଲି ଉଠେ, ତାଙ୍କର ଆଖି ଛୋଟ ହୋଇଯାଏ । ମୁହଁରେ ଚରିଯାଏ ଆଦିମ ଲାଳସା । ବୀରବାବୁଙ୍କ ପାଖରେ ବସିଛନ୍ତି ପଚିଶ ଛବିଶ ବର୍ଷର ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକଟିଏ । ଦୁହେଁ ଖୁବ୍ ନିମ୍ନ ସ୍ୱରରେ କଥାଭାଷା ହେଉଥାନ୍ତି ।

ଡକ୍ଟର ଶର୍ମା ମୋତେ ଇଶାରାରେ ବସିବାକୁ କହିଲେ । କାନ୍ଥକୁ ଲାଗି ପଡ଼ିଥିବା ଗୋଲେଇ ଚେୟାରରେ ମୁଁ ଡକ୍ଟର ଶର୍ମାଙ୍କ ପାଖରେ ବସି ପଡ଼ିଲି । ଘରେ ଆମକୁ ନେଇ ଆଠ ଜଣ । ଆମେ ଦୁଇଜଣ ଦେଖଣାହାରୀ, ବାକି ଛଅ ଜଣ କ'ଣ ଶରୀର ଅଦଳ ବଦଳ କରିବେ ? କାହାକୁ ବା ପଚାରିବି ?

କିଛି ସମୟ ପରେ ଜଣେ ଦୀର୍ଘଦେହୀ ବ୍ୟକ୍ତି ଆଫଗାନମାନଙ୍କ ପରି ଧଳା କୁର୍ତ୍ତା ଓ ପାଇଜାମା ପିନ୍ଧିଛନ୍ତି, ଖୁବ୍ ଧୀର ପାଦରେ ଆମ ଭିତରକୁ ଆସିଲେ । ତାଙ୍କୁ ଦେଖି ବୀରବାବୁଙ୍କ ପାଖରେ ବସିଥିବା ଯୁବକ ଜଣକ ଠିଆ ହୋଇ ନମସ୍କାର କଲେ । ଭଦ୍ରଲୋକ କାଚଘର ଭିତରକୁ ପ୍ରବେଶ କଲେ । ତାଙ୍କ ପଛେ ପଛେ ବୀରବାବୁ ଓ ଯୁବକ ଜଣକ ଘର ଭିତରକୁ ପଶିଲେ । ତା'ପରେ ଦୁହେଁ ଖାଲି ଦେହରେ ଆମ ଆଡ଼କୁ ପିଠି କରି ଚେକା

ମାଡ଼ି ବସିଲେ । ସେମାନଙ୍କ ଆଗରେ ଧଳାକୁର୍ତ୍ତା ପାଇଜାମା ପିନ୍ଧିଥିବା ବ୍ୟକ୍ତିଜଣଙ୍କ ଖାଲିଦେହରେ ପଦ୍ମାସନରେ ଆଖିମୁଦି ବସିଥାନ୍ତି । ଚାରିଆଡ଼ ନିଃଶବ୍ଦ କେବଳ ଟ୍ୟୁବ ଲାଇଟରୁ ହାଲୁକା ଓଁ ଶବ୍ଦଟିଏ ଆସୁଥାଏ, ଦେଖିଲି ଭିତର ଘର ଆଲୁଅ କ୍ରମେ କମିଗଲା । ତିନିଜଣ ଛାୟା ମୂର୍ତ୍ତି ପରି ବସିଥାନ୍ତି । ହଠାତ୍ ଲକ୍ଷ୍ୟ କଲି ବୀରବାବୁ ଓ ତାଙ୍କ ପାଖରେ ବସିଥିବା ଯୁବକ ଜଣଙ୍କ ମେରୁଦଣ୍ଡ ଦେଇ ଏକ ନେଳୀ ଆଲୋକ ସ୍ତମ୍ଭ ବ୍ୟାରୋମିଟରରେ ପାରଦ ଉଠିଲା ପରି ଧୀରେ ଧୀରେ ଉପରକୁ ଉଠୁଛି । କ୍ରମେ ଆଲୋକ ସ୍ତମ୍ଭ ଦୁହିଁଙ୍କ ମସ୍ତିଷ୍କଠି ପହଞ୍ଚିଲା । ଏହି ସମୟରେ ଆଗରେ ବସିଥିବା ବ୍ୟକ୍ତିଙ୍କ କପାଳରେ ଏକ ଉଜ୍ଜ୍ୱଳ ଆଲୋକ ଦେଖାଗଲା । ତାପରେ ସେ ଘରର ଆଲୁଅ ଲିଭିଗଲା । ପରେ ପରେ ଉଜ୍ଜ୍ୱଳ ଆଲୋକର ବନ୍ୟାରେ ସେ ଘରଟି ଭାସି ଉଠିଲା । ତିନି ଜଣଯାକ ଏକାଠି ଠିଆହେଲେ । ପରେ ଜଣ ଜଣ ହୋଇ ଘରୁ ବାହାରି ଆସିଲେ । ବୀରବାବୁ ସାମାନ୍ୟ ଗମ୍ଭୀର, ଯୁବକ ଜଣକ ମୁହଁରେ ତୃପ୍ତି ଓ ପ୍ରାପ୍ତିର ହସ ।

ଯୁବକ ଜଣକ ଓ ବୀରବାବୁ ନିମ୍ନ ସ୍ୱରରେ କଥା ହୋଇ କରି-ଡୋରରେ ଆଗରେ ଯାଉଥାନ୍ତି । ଯୁବକ ଜଣଙ୍କ ହାତ ବୀରବାବୁଙ୍କ କାନ୍ଧରେ । ଦୃଶ୍ୟଟି ଦୃଷ୍ଟି କଟୁ । ଭାବିଲି ଯଦି ସତରେ ଅନ୍ତର ପୁରୁଷ କାୟା ବଦଳ କରିଥାନ୍ତି ତେବେ ବୀରବାବୁ ତ ଏବେ ଯୁବକ । ମୁଁ ହତବୁଦ୍ଧି ହୋଇ ଦୁଇ ଜଣଙ୍କୁ ଦେଖୁଥାଏ । ଡକ୍ଟର ଶର୍ମା ମୋତେ ବାହାରେ ଅପେକ୍ଷା କରିବାକୁ କହି ପୁଣି ରିସେପସନ୍‌କୁ ଗଲେ । ସେଣ୍ଟର ବାହାରେ ଗୋଟିଏ କାର ଠିଆ ହୋଇଥାଏ । ଯବୁକ ଜଣକ ସେଇ କାରରେ ବସି ଚାଲିଗଲେ । ସମ୍ବିତ ଫେରି ପାଇ ମୁଁ ବୀରବାବୁଙ୍କ ଶରୀର ପାଖରେ ଠିଆ ହେଲି । ନମସ୍କାର ବିନିମୟ ପରେ ସାମାନ୍ୟ ହସି ଭଦ୍ରଲୋକ କହିଲେ, 'ଆପଣ ଭିତରେ ବସିଥିଲେ ?' 'ହଁ' । ମୋର -' ମୋ ପାଟିରୁ କଥା ଛଡ଼େଇ ନେଇ ବୀରବାବୁଙ୍କ ଶରୀରରେ ଥିବା ଯୁବକ ଜଣକ କହିଲେ ପାଞ୍ଚଦିନ ପରେ ମୋର ଶରୀର ଫେରି ଆସିବ ସେତେବେଳ ଆପଣ ନେବେ ।

'ମୁଁ ଶରୀର ପାଇଁ ଆସିନାହିଁ ।'

'ତେବେ ?'

'ଏଇ କାମ ଆପଣ କେବେଠୁ କରୁଛନ୍ତି ?'

'ବେଶୀଦିନ ନୁହେଁ । ଏଇଟା ମୋର ତିନି ନମ୍ବର କେସ୍ ।'

'ଅନ୍ୟ ଶରୀରରେ ଆପଣଙ୍କୁ ଅଣନିଶ୍ୱାସୀ ଲାଗେ ନାହିଁ ?'

'ଆକ୍ଷରିକ ଅର୍ଥରେ ହୁଏତ ଅଣନିଶ୍ୱାସୀ ଲାଗେ ନାହିଁ । ତେବେ ଅନ୍ୟ ଶରୀରର ସମସ୍ତ ଜ୍ୱାଳା ଯନ୍ତ୍ରଣା ମୋତେ ଭୋଗ କରିବାକୁ ହୁଏ । ଏଇ ଯେଉଁ ବାବୁଙ୍କ ଶରୀର ଦେଖୁଛନ୍ତି କ'ଣ ନାହିଁ ? ହାଇ-ବ୍ଲଡ୍ ପ୍ରେସର୍, ଡାଇବେଟିସ, କନଷ୍ଟିପେସନ, ଇନ୍‌ସ୍ୟୁଲିନ ଇଞ୍ଜେକ୍‌ସନ ନେବାକୁ ହେବ, ପ୍ରେସର ବଟ଼ି ଗିଳିବାକୁ ହେବ ।'

ପାଟିରୁ ବାହାରିଲା, 'ଅଦ୍ଭୁତ ।'

'ଅଦ୍ଭୁତ ଆଉ କ'ଣ ? ସବୁ ବ୍ୟବସାୟର ଅଙ୍ଗ ।'

'ଅନ୍ୟ ଶରୀରରେ ଏଇ ପାଞ୍ଚ ଦିନ କ'ଣ କରିବେ ?'

'ଚୁପ୍ ଚାପ୍ ଗୋଟିଏ ହୋଟେଲରେ ରହିବି । ଅନ୍ୟ ଶରୀର ଜିମ୍ମା ନେଇଛି ସେ ଶରୀର ମୋତେ ଦେଖିବାକୁ ହେବ ।'

'ତେଣେ ଆପଣଙ୍କ ଶରୀର ।'

'ପାଞ୍ଚଦିନ ପାଇଁ ହାଇ ପ୍ରିମିୟମରେ ଇନସ୍ୟୁରେନ୍ସ ହୋଇଛି ।'

'ଯଦି ପାଞ୍ଚଦିନ ଭିତରେ ଅନିୟମ, ବ୍ୟଭିଚାରରେ ଶରୀର ନଷ୍ଟ ହୋଇଯାଏ ?'

'ପୂର୍ବରୁ ଯେଉଁ ଦି'ଜଣ ନେଇଥିଲେ ସେମାନେ କୌଣସି କ୍ଷତି କରି ନାହାନ୍ତି । ଜଣେ ଥିଲେ ସାଇକୋଲୋଜି ପ୍ରଫେସର । ଶରୀର ନେଇ କ'ଣ ସବୁ ରିସର୍ଚ୍ଚ କଲେ । ଅନ୍ୟ ଜଣେ ମିଡ଼ିଆ ପରସନାଲିଟି ଫିଚର ଲେଖିବା ପାଇଁ ନେଇଥିଲେ ।'

'ଏଥର ଯିଏ ନେଇଛନ୍ତି ତାଙ୍କୁ ଆପଣ ଜାଣନ୍ତି ?'

'ଠିକ୍ ଜାଣିନାହିଁ । ଆମ ସରକାରଙ୍କ ଗେଷ୍ଟ । ଭଦ୍ରଲୋକଙ୍କ ପାସ୍‌ପୋର୍ଟରେ ଦେଖିଲି ଲେଖା ହୋଇଛି ଆଡ୍‌ଭୋକୋଟ ।'

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, 'ବୀରବାବୁ ଆଡ଼ଭୋକେଟ ?'

'ଆପଣ କ'ଣ ତାଙ୍କୁ ଚିହ୍ନନ୍ତି ?'

'ମୁଁ ତାଙ୍କୁ ଚିହ୍ନିଛି । ତେବେ ସେ ମୋତେ ଚିହ୍ନି ନାହାନ୍ତି । ସେ ରାଜନୀତି କରନ୍ତି ।'

'ତେବେ ତ ବିରାଟ ଲୋକ ।'

ଆମ କଥା ମଝିରେ ଡକ୍‌ଟର ଶର୍ମା ଆସି ପହଞ୍ଚିଲେ । ମୁଁ ବୀରବାବୁଙ୍କ ଶରୀରଠୁ ବିଦାୟ ନେଇ ଆସିଲି । ଡକ୍ଟର ଶର୍ମା କହିଲେ, ପାଞ୍ଚଦିନ ପରେ ପୁଣି ଶରୀର ଅଦଳବଦଳ ହେବ । ଯଦି ଦେଖିବାକୁ ଚାହାନ୍ତି, ଆସିବେ ।'

'ପାଞ୍ଚଦିନ ପରେ ଓରିଏଣ୍ଟାଲ ମିସିଟିକ ରିସର୍ଚ୍ଚ ସେଣ୍ଟରଠି ପହଞ୍ଚୁ ପହଞ୍ଚୁ ଡେରୀ ହୋଇଗଲା । ସେଠାର ରିସେପସନ ଲାଉଞ୍ଜରେ ପହଞ୍ଚି ଦେଖେ ବୀରବାବୁ ଓ ସେଇ ଯୁବକ ଜଣକ ଗୋଟିଏ କଣକୁ ବସିଛନ୍ତି । ଯୁବକ ଜଣକ ମୋତେ ଦେଖି ହାତଠାରି ଡାକିଲେ । ମୁଁ ଗଲାରୁ ମୋତେ ମାନତି ରଖି କହିଲେ, 'ପାଞ୍ଚଟା ଦିନ ମୋ ଶରୀରଟାକୁ କ'ଣ କରିଦେଲେ ଦେଖନ୍ତୁ । ପୂରା ଖୋଳ କରିଦେଇଛନ୍ତି ।'

ମନେ ମନେ ଭାବିଲି ସେଇଟା ତାଙ୍କର ପୁରୁଣା ଆଦତ । ଯାହା ପାଇବେ ଖୋଳ ନ ହେଲା ଯାଏ ଖାଉଥିବେ ।

ବୀରବାବୁ ଉତ୍ୟକ୍ତ ଜନତାକୁ କିଭଳି ଶାନ୍ତ କରି ହୁଏ ତା'ର କାଇଦା ଜାଣନ୍ତି । ତାଙ୍କର ଆଖି ଛୋଟ ହେଲା, ଥରିଲା ଓଠରେ ତାଚ୍ଛଲ୍ୟ ହସ । ପକେଟରୁ ନୋଟ ଗୋଛାଏ ବାହାର କରି ଗଣିବାକୁ ଲାଗିଲେ । ସେଥିରୁ କିଛି ଯୁବକ ଜଣକ ହାତରେ ଗୁଞ୍ଜି ଦେଲେ ।

ତା'ପରେ ଥଟ୍ଟାଳିଆ ସ୍ୱରରେ, ମୋ ଆଡକୁ ଅନେଇ କହିଲେ, 'କିହୋ ଭଲ ମଣିଷ ମାଷ୍ଟ୍ର ୟା'ଙ୍କୁ ଟିକେ ବୁଝେଇ ଦିଅ । ଜିନିଷ ବ୍ୟବହାର କଲେ ନଷ୍ଟ ହୁଏ ।'

ଯୁବକ ଜଣକ ରାଗିକହିଲେ, 'ତା' ବୋଲି ଯେଉଁ ବିଷ ଆପଣ ଶରୀରରେ ପୁରେଇଲେ । ଛି ଛି ଏଇ ବୟସରେ ଆପଣଙ୍କ--'

ବୀରବାବୁ ପୁଣି ହସିଲେ, କହିଲେ, 'ତୁମ ଶରୀର ନେଇ ମୁଁ କ'ଣ ମନ୍ଦିର ଯିବି ଭାବିଥିଲ ? କେତେଟା ଦିନରେ ସବୁ ଠିକ୍ ହୋଇଯିବ । ଆଜିକାଲି ସେଗୁଡାକ କାଛୁ କୁଣ୍ଡିଆ ପରି ଭଲ ହେଉଛି । ତୁମ ଶରୀରରେ ବେଶ ଦମ୍ ଅଛି । ବୀରବାବୁ ଉଠିଲେ । ଆମକୁ ପଛ କରି ଆଗେଇ ଚାଲିଲେ । ଭକୁଆ ଜନତା ପରି ମୁଁ ଓ ଯୁବକ ବୀରବାବୁଙ୍କୁ ଚାଲିଯିବାର ଦେଖିଲୁ ।

# ହୁମା

ମୋର ବିବାହ ହଠାତ୍ ହୋଇଗଲା । ମୋ ପାଇଁ ବା ମୋ ସ୍ତ୍ରୀ ପାଇ ଆମ ବିବାହ ଏକ ଘଟଣା ବିଶେଷ । ସାଧାରଣ ଏକ ବିବାହକୁ ନେଇ ଗଳ୍ପ ହୁଏ ନା । ସେଦିନ ସେଇ ଲଗ୍ନରେ ଅନେକ ଗୁଡ଼ିଏ ବିବାହ ହୋଇଥିଲା । ତେବେ ଆମ ବିବାହ ପରେ ଯେଉଁ କାଣ୍ଡଟି ଘଟିଲା — । ଏବେ ଭାବିଲା ବେଳକୁ ବିଶ୍ୱାସ ହେଉ ନାହିଁ । କଳ୍ପବିଜ୍ଞାନ ବହିରେ ପଢ଼ିଛି ଟେଲିପୋର୍ଟେଡ୍ ହୋଇ ଲୋକେ ଗ୍ରହାନ୍ତରକୁ ଯାଆନ୍ତି । ମୁଁ ନିଜେ ଟେଲିପୋର୍ଟେଡ୍ ହୋଇଥିଲି !— ସାଙ୍ଗରେ ପୁଣି ମୋର ନବବିବାହିତା ପତ୍ନୀ । ରଶ୍ମୀର ବିହ୍ୱଳତା ଏ ଯାଏଁ କଟି ନାହିଁ । ରକ୍ତ ନେବା ପାଇଁ ଇନଜେକ୍‌ସନ ଛୁଞ୍ଚି ଫୋଡ଼ା ଦାଗଟା ଏବେବି ରହିଛି । ତେବେ ଏ ସମସ୍ତ କଥା ତ ପରର କଥା । ଏ ଗଳ୍ପର ଆରମ୍ଭ 'ହୁମା'କୁ ନେଇ — ।

ସେଦିନ ରାତିରେ ଆମ ଗାଁ ଲତାଦେଇପୁରରେ ଆଉ କେହି ଶୋଇଲେ ନାହିଁ । ଶୀତ ରାତି । ସାଙ୍ଗକୁ କାଳୁଆ ପବନ । ନ'ଟା ବାଜୁ ନ ବାଜୁଣୁ ଯେ ଯାହା କବାଟ କିଳି ଦେଇ ଶୋଇଲେଣି । ବାହାରେ ଶବ୍ଦ କହିଲେ କିଛି ରାତିବୁଲା ବାଦୁଡ଼ି ବା ପେଚାର ଡେଣା ଝାପଟା ଶବ୍ଦ । ଆଉ କାହା ଘରେ ଯଦି ପିଲା କାନ୍ଦିଲା କି କାହାରି ଧମା କାଶ ଉଠିଲା, ତେବେ ସେଇ ଶବ୍ଦ ସାଙ୍ଗକୁ କୁକୁର ଗୁଡ଼ାକ ରାହା ଧରି ବୋବାଳି ଛାଡ଼ନ୍ତି । ତା ପରେ ପୁଣି ଶୁନଶାନ୍ ।

ରାତି କେତେହେବ କେଜାଣି ଗୋଟାଏ ଭାରୀ ଜିନିଷ ଉପରୁ ପଡ଼ିଲେ ଯେମିତି ଶବ୍ଦ ହୁଏ, ଠିକ୍ ସେଇପରି ଏକ ବିକଟ ଶବ୍ଦ ହେଲା । ସତେ ଅବା ଆକାଶରୁ ଖଣ୍ଡେ ଭାଙ୍ଗି ପଡ଼ିଲା । ତା ପରେ ସବୁ ଶୂନ୍ । ଅନେକଙ୍କ କାନ ତାବଦା ମାରି ଗଲା । କୁକୁର ଗୁଡ଼ାକ ଏକାଠି ବୋବେଇ ଉଠିଲେ । କାଉ ଗୁଡ଼ାକ ଡରରେ କାଁ କାଁ କରି ଉଡିଗଲେ । ଘର ଭିତରେ ଆମେ

କିଛି ବୁଝି ପାରିଲୁ ନାହିଁ। କ'ଣ ହେଲା ଅନ୍ଧାରରେ ଇଏ ତା ମୁହଁକୁ ସେ ଇଆ ମୁହଁକୁ ବଲ ବଲ କରି କେବଳ ଅନେଇ ରହିଲୁ। ମା ଛୁଆକୁ ଜାବୁଡ଼ି ଧରିଲା। ଅଜା ଆଈଙ୍କ କୋଳ ଭିତରେ ନାତି ନାତୁଣି ଆହୁରି କୁଙ୍କୁଡ଼େଇ ଗଲେ।

ଅଧଘଣ୍ଟା ଚାଳିଶ ମିନିଟ୍ ଗଲା। ଆଉ କୌଣସି ଶବ୍ଦ ହେଲା ନାହିଁ। ଆମେ ଗୋଟି ଗୋଟି ହୋଇ ପଦାକୁ ଆସିଲୁ। ପ୍ରାୟ ଦୁଇଶହ ଘରର ଗାଁ। ଚାହୁଁ ଚାହୁଁ ଗାଁ ମଝିରେ ଭାଗବତ ଟୁଙ୍ଗୀ ପାଖରେ ଥିବା କ୍ଳବ ଘଟଠି ପ୍ରାୟ ଶହେ ଲୋକ ରୁଣ୍ଡ ହୋଇଗଲେ। କାହା ମୁହଁରେ କଥା ନାହିଁ। ଲୋକେ ପରସ୍ପର ମୁହଁକୁ ଅନଉଥାନ୍ତି। ଦେଖୁଥାନ୍ତି ଅମୁକ ଆସିଲା କି ନାହିଁ। କିଛି ସମୟ ଲାଗିଲା ସମସ୍ତଙ୍କୁ ସ୍ଥିର ହେବା ପାଇଁ। ଶବ୍ଦଟା କ'ଣ କେଉଁଆଡୁ ଆସିଲା କେହି ଏକ ମତ ହୋଇପାରିଲେ ନାହିଁ। କିଏ କହିଲା ଆଗ୍ନେୟଗିରିରୁ ଅଗ୍ନ୍ୟୁତ୍ପାତ ହେଲେ ଏହିପରି ଶବ୍ଦ ହୁଏ। ଯଦିଓ କେହି ଆଗ୍ନେୟଗିରି ଦେଖି ନାହାନ୍ତି। ପିଲାଦିନେ ବହିରେ ପଢ଼ିଥିଲେ। ବିସୁଭିୟସର ଅଗ୍ନ୍ୟୁତ୍ପାତ କଥା। ଆଉ ଜଣେ କହିଲା ଗାଁ ପାଖରେ ବିସୁଭିୟସ ପରି ପର୍ବତ କାହିଁ। ଯାହା ଅଛି କେବଳ ମୁଣ୍ଡିଆଟିଏ। ସେଥିରୁ ଅଗ୍ନ୍ୟୁତ୍ପାତ ହେବାର ସମ୍ଭାବନା ନାହିଁ। ସେ କଥା ରହିଲା ନାହିଁ। ଗାଁରେ ଥିବା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର ଡାକ୍ତର ସେଦିନ ରାତିରେ ଡାକ୍ତରଖାନାରେ ଥିଲେ। ସେ କହିଲେ, 'ମୋର ମନେ ହେଉଛି ଗୋଟାଏ ଗ୍ରହାଣୁ ଖଣ୍ଡ ବା ଧୂମକେତୁ ଆଖ ପାଖରେ କେଉଁଠି ପଡ଼ିଛି। ଏମିତି ଗୋଟିଏ ବିରାଟ ଖଣ୍ଡ ୧୯୪୦ ମସିହାରେ ସାଇବେରିଆ ଅଂଚଳରେ ପଡ଼ିଥିଲା।' ତାଙ୍କ କଥାକୁ ସମର୍ଥନ ଜଣାଇ ଖବର କାଗଜ ପଢୁଥିବା ଟି. ଭି. ଦେଖୁଥିବା କିଛି ଟୋକା କହିଲେ ଡାକ୍ତରବାବୁ ସ୍କାଇଲ୍ୟାବ ନୁହେଁ ତ? ଡାକ୍ତର କହିଲେ, ହୋଇପାରେ। ସକାଳ ହେଲେ ଯାଇ ଦେଖିବା।

ସେ ରାତିରେ କାହା ଆଖିକୁ ନିଦ ଆସିଲା ନାହିଁ। ଗୁଡ଼ିଆ ଦୋକାନରେ ପୁଣି ଚୂଲି ଜଳିଲା। ଚାହା ଫୁଟିଲା ଲୋକେ ଆପାତ ଭିତିକୁ ଭୁଲି ପୁରୁଣା ସ୍ମୃତି ଘାଣ୍ଟିଲେ। ଚାହୁଁ ଚାହୁଁ ରାତି ପାହିଲା। ଦଳ ଦଳ ହୋଇ ଲୋକେ ବାହାରିଲେ ଅନ୍ୱେଷଣରେ।

ଲତାଦେଇପୁରରୁ ରାଧଦେଇ ପୁର ଗାଁ କୋଶେ ବାଟ। ଦୁଇ ଗାଁ ମଝିରେ ଟାଙ୍ଗରା ସମତଳ ପଡ଼ିଆ। ଲୋକେ କହନ୍ତି ପୀର ବାବାଙ୍କ ପଡ଼ିଆ। ପଡ଼ିଆ ମଝିରେ ଗୋଟାଏ ଦି ଟା ଖଜୁରୀ ଗଛ। ପଡ଼ିଆରେ ଗୋଟିଏ ପଟୁ ଦେଖିଲେ ଅନ୍ୟ ପଟ ଗାଁ ର ଗାଈ ମହିଁଷି ଏପରିକି ମଣିଷ ଚଳପ୍ରଚଳ ହେବାର ଦେଖାଯାଏ।

ଯେଉଁ ଦଳଟା ଯାଇଥିଲା ପୀର ବାବାଙ୍କ ପଡ଼ିଆ ଆଡ଼କୁ ତାଙ୍କ ଆଖି ଖୋସି ହୋଇଗଲା। ରାତାରାତି ପଡ଼ିଆ ମଝିରେ ବି ମହଲା କୋଠା ଉଚ୍ଚର ଲମ୍ବାଳିଆ ପାଣି କଖାରୁଟାଏ କାହୁଁ ଆସିଲା। ଫଗଡା ହେଲାରୁ ସମସ୍ତେ ଦେଖିଲେ ଧୂସର ରଙ୍ଗର ବସ୍ତୁଟିଏ ଦୁଇ ଶହରୁ ଅଢ଼େଇଶହ ଫୁଟ ହେବ ପରା ନିଥର ହୋଇ ପଡ଼ିଛି। ଡରରେ କେହି ତା ପାଖକୁ ଯାଉ ନ ଥାନ୍ତି। କାହା ପାଟିରୁ କଥା ବାହାରୁ ନ ଥାଏ। କୁନି ପିଲାଟିଏ ତା ବାପା କାନ୍ଧରେ ଚଢ଼ି ଅନେଇଥାଏ। ତା ପାଟିରୁ କଥା ବାହାରିଲା, 'ବାପା ହେଇଟା 'ହୁମା'। ତା ବାପା ମୁଣ୍ଡ ଟୁଙ୍ଗାରି କହିଲା ହଁ 'ହୁମା' ଚୁପ୍। ହୁମା ନାଁ ଟା ରହିଗଲା ଲୋକଙ୍କ ମୁହଁରେ ଲୋକେ କହିଲେ 'ହୁମା' ଖସିଛି। କିଏ କହିଲା 'ହୁମା' ଶୋଇଛି। ସେଦିନ କେହି କାମକୁ ଗଲେ ନାହିଁ। ମାଇପେ ଚୂଲି ଜାଳିଲେ ବହୁତ ଡେରିରେ।

କଥାଟା ଆଉ ଦୁଇ ଗାଁ ଭିତରେ ରହିଲା ନାହିଁ। ଗାଁରୁ ସହରକୁ, ସହରରୁ ରାଜଧାନୀକୁ ସେଠାରୁ ଦେଶ ବିଦେଶକୁ ବ୍ୟାପିଗଲା। ଲୋକଙ୍କ ସୁଅ ଛୁଟିଲା। ମନ୍ତ୍ରୀ ଆସିଲେ। ଗାଁକୁ ନୂଆ ରାସ୍ତା ହେଲା। ଆଖ ପାଖରେ ଦୋକାନ ବସିଗଲା। ବିଦେଶରୁ ଧାଇଁ ଆସିଲେ ବୈଜ୍ଞାନିକ ଦଳ। ପତ୍ରିକା ମାନଙ୍କରେ ଜ୍ଞାନଗର୍ଭ ପ୍ରବନ୍ଧମାନ ବାହାରିଲା। ବିଜ୍ଞାନୀମାନେ ଏକମତ ହୋଇ ପ୍ରକାଶ କଲେ, 'ହୁମା' ଏକ ମହାକାଶଯାନ। ନିଶ୍ଚୟ ଅନ୍ୟ ନକ୍ଷତ୍ର ଲୋକରୁ ଆସିଛି। ତେବେ 'ହୁମା' ଭିତରେ କ'ଣ ଅଛି ତାକୁ ଖୋଲି ଦେଖିବା ପାଇଁ ବିଭିନ୍ନ ବୈଜ୍ଞାନିକ ବିଭିନ୍ନ ମତ ଦେଲେ। ଦଳେ କହିଲେ ନ ଖୋଲିଲେ ଜାଣିବା କେମିତି? ଆଉ ଦଳେ କହିଲେ ଖୋଲି ଯଦି କିଛି ଅଘଟଣ ଘଟିଲା ସେତେବେଳେ ସମ୍ଭାଳିବ କିଏ? ଏଇ ସବୁ ଟଣାଓଟରାରେ ସରକାର ସ୍ଥିର କଲେ ଗୋଟାଏ କମିଟି ଗଢ଼ିବାକୁ। କମିଟି ରିପୋର୍ଟ ଦେଲେ ତାହା ଲୋକସଭାରେ ପଢ଼ିବ ତା ପରେ ଯାହା କରାଯିବ।

ଏହା ଭିତରେ ଜାତିସଂଘ ତରଫରୁ ନିକଟରେ ଏକ ବିଜ୍ଞାନଗାର ସ୍ଥାପିତ ହେଲା। ଦେଶ ବିଦେଶରୁ ବୈଜ୍ଞାନିକମାନେ ବିଭିନ୍ନ ଧରଣର ଯନ୍ତ୍ରପାତି ଆଣି ପରୀକ୍ଷା ନିରିକ୍ଷା ଆରମ୍ଭ କଲେ। ବର୍ଷକ ଭିତରେ ସେମାନେ ନିର୍ଦ୍ଦିଷ୍ଟ କିଛି ପାଇଲେ ନାହିଁ। ବୈଜ୍ଞାନିକମାନଙ୍କଠାରୁ କୌଣସି ନିର୍ଦ୍ଦେଶ ନ ପାଇ କମିଟି ମଧ୍ୟ ଚୁପଚାପ ରହିଗଲା। ହୁମା ସେଇଭଳି ପଡ଼ି ରହିଲା। ବର୍ଷା ଦିନରେ ତା କଡ଼ରେ ଘାସ କଅଁଳିଲା। ଚଢ଼େଇ ତା ଉପରେ ବସି ଅପରିଷ୍କାର କଲା। ଲୋକେ ତା ଉପସ୍ଥିତି ଭୁଲିଗଲେ। ଦୁଇ ଗାଁର ଲୋକେ ହୁମାକୁ କଡ଼େଇ ଚଳପ୍ରଚଳର ବାଟ କରିନେଲେ।

ଜୀବନ ପୁଣି ସ୍ୱାଭାବିକ ଢଙ୍ଗରେ ଚାଲିଲା। ଏହା ଭିତରେ ରଶ୍ମୀ ସହ ମୋର ବିବାହ ହେଲା। ଆମର ଅଷ୍ଟମଙ୍ଗଳା ସରି ନଥାଏ। ଗୋଡ଼ରୁ

ଅଳତା ଦାଗ ଲିଭି ନ ଥାଏ। ଘରେ କିଛି କୁଟୁମ୍ବ ଥାଆନ୍ତି। ସେଦିନ ରାତିରେ ଖିଆପିଆ ସରିଲା। ମୁଁ ବିଛଣାରେ ଗଡ଼ପଡ଼ ହେଉଥାଏ। ସମସ୍ତେ ଯେ ଯାହା ଘରେ ପଶି କିଳିନେଲାରୁ ରଶ୍ମୀ ଆସିଲା। କିଛି ସମୟ ପରେ ଆଖିକୁ ପତଳା ନିଦ ଲାଗିଛି କି ନାହିଁ ପ୍ରଥମେ ମୋ ନାଁ ଧରି ତା ପରେ ରଶ୍ମୀ ନାଁ ଧରି କିଏ ଯେପରି ଡାକିଲା। ସେ ସ୍ୱର ଥିଲା ଭୀଷଣ ଅସ୍ପଷ୍ଟ। ତଥାପି ପରିଷ୍କାର। ଶବ୍ଦ ତରଙ୍ଗ ସତେ ଅବା କାନ ନୁହେଁ ସିଧା ମସ୍ତିଷ୍କ ମଧ୍ୟକୁ ଯାଉଥାଏ। ମସ୍ତିଷ୍କ ସେ ତରଙ୍ଗକୁ ଗ୍ରହଣ କଲା। ସେଇ ବୋଧ ଶରୀରକୁ ଚାଳିତ କଲା। ତା ପର କଥା ଆଉ ମନେ ନାହିଁ ଆମେ ଦୁହେଁ ଭାସି ଭାସି ଏକ ବାୟବୀୟ ଅବସ୍ଥାରେ ପଶିଗଲୁ ହୁମା ଭିତରକୁ।

ହୁମା ଭିତରେ ଆମକୁ ଦୁଇ ଜଣ ଅଭ୍ୟର୍ଥନା ଜଣେଇଲେ। ସେମାନଙ୍କୁ ଦେଖିବାକୁ ଆମ ପରି ହେଲେ ତାଙ୍କ ମୁଣ୍ଡଟା ଶରୀରଠୁ ଯଥେଷ୍ଟ ବଡ଼। ମୁଣ୍ଡ ଓ ଶରୀର ତୁଳଣାରେ ହାତ ଗୋଡ଼ ଗୁଡ଼ାକ ଲମ୍ବାଳିଆ ସରୁ ସରୁ। ଆଖି ଦି ଟା ଢ଼ିମା ଢ଼ିମା। ମୁଣ୍ଡରେ ଗୋଟାଏ ହେଲେ ବାଳ ନାହିଁ, ଏପରିକି ଭୂଲତା ଓ ଆଖିପତାରେ ମଧ୍ୟ କେଶ ନାହିଁ। ସେମାନେ ଆମରି ଭାଷାରେ କଥା ହେଉଥିଲେ। ହେଲେ ଭାଷାଟା ସାବଲୀଳ ନୁହେଁ, କଟା କଟା। ପରେ ତାଙ୍କୁ ପଚାରିଥିଲି ଆମ ଭାଷା ଶିଖିଲେ କେଉଁଠୁ? ଉତ୍ତରରେ ସେମାନଙ୍କ ଦଳପତି ଯାହାଙ୍କ ନାଁ 'ସୁ' କହିଥିଲେ। ଆମେ ଏଠାରେ ଅବତରଣ କଲାପରେ ଆପଣଙ୍କ ଭାଷାର ତରଙ୍ଗ ବିଶ୍ଳେଷଣ କରିଥିଲୁ। ବିଶ୍ଳେଷଣ କଲା ପରେ ଭାଷାର ମଞ୍ଜଟା ବାହାର କରିନେଲୁ। ସବୁ ଭାଷାର ଗୋଟାଏ ମଞ୍ଜଥାଏ, ମଞ୍ଜଟା ହେଲା ଭାଷାର ବ୍ୟାକରଣ। ବ୍ୟାକରଣଟା ବୁଝିଗଲେ ଭାଷା ଶିକ୍ଷା ଅତି ସହଜ। ତାଙ୍କ କଥା ଶୁଣି ମନେ ମନେ ଭାବୁଥାଏ, ଏମାନଙ୍କ ନିଜସ୍ୱ ଭାଷା କ'ଣ? ମୋ ମନ କଥା ସେ ବୁଝି କହିଲେ, ଭାବର ଆଦାନ ପ୍ରଦାନ ପାଇଁ ଆପଣମାନେ ଭାଷାର ବ୍ୟବହାର କରନ୍ତି ସେଇ ଭାବ ଆମେ ବିନା କଥାରେ କରିପାରୁ। ତା ଛଡା ସଭ୍ୟତାର ଏଭଳି ଏକ ସ୍ତରରେ ଆମେ ପହଞ୍ଚିଛୁ ଯେଉଁଠି ଛୋଟ ମୋଟ ବୋଧ, ଛୋଟ ଛୋଟ ଦୁଃଖ, ହସ, ଆନନ୍ଦ ଆମକୁ ଆଉ ଘାରେ ନାହିଁ। ଆମ ଭିତରେ ମାନ ଅଭିମାନ ଆଦି ଭାବ ମଉଳି ଗଲାଣି। ଯେଉଁ ସମସ୍ତ ବୋଧ ନେଇ ଆପଣମାନଙ୍କ ଜୀବନ ସେଗୁଡ଼ାକ ଆମ ପାଇଁ ବାତୁଳତା କହି ସୁ ହସିଥିଲେ। ତାଙ୍କୁ ପଚାରିଲି, ତେବେ କଣ ଆପଣମାନେ ସମସ୍ତେ 'ସ୍ଥିତପ୍ରଜ୍ଞ', ଅନ୍ୟ ମନସ୍କ ହୋଇ ସୁ ଉତ୍ତର ଦେଲେ ହୋଇପାରେ। କହିଲି, ତେବେ ଆପଣମାନେ ଗୋଟିଏ ଗୋଟିଏ ଯନ୍ତ୍ରମାନବ ଯାହାକୁ ଆମେ କହୁଛୁ 'ରବଟ'। ବୋଧ ନାହିଁ, ଭାବ ନାହିଁ, ଉତ୍ତାପ ନାହିଁ ତେବେ ଆପଣମାନେ ବଂଚିଛନ୍ତି କିପରି?

ପ୍ରଥମ ଆଳାପ ପରେ ପରେ ସୁ ଆମକୁ ଗୋଟିଏ ବଖରା ଦେଖେଇ କହିଲେ, ବିଶ୍ରାମ କରିବା ପାଇଁ। ହୁମା ଭିତରେ ଦିନ ରାତି ହୁଏ ନାହିଁ। ଚାରିଆଡ଼େ ହାଲୁକା ଆଲୁଅ ପରଦିନ ଶରୀରରେ ଥିବା ଜୈବିକ ଘଡ଼ି (Biological clock) ଜଣେଇ ଦେଲା ସକାଳ ହେଲାଣି। ନିତ୍ୟକର୍ମ ସାରି ଆମେ ସେ ବଖରା ବାହାରକୁ ଆସିଲୁ। ସେଦିନ ପ୍ରାତ:ରାଶ ବେଳେ ଆଉ ଦି ଜଣ ସହ ପରିଚୟ ହେଲା। ସେମାନଙ୍କ ନାଁ ଗୁଡ଼ାକ ସବୁ ଏକ ଅକ୍ଷରିଆ। 'ଲି', 'ପି', ଏହିପରି।

ପ୍ରାତ:ରାଶ ଆମେ ସମସ୍ତେ ଏକାଠି କଲୁ। ସେଇଠି ତାଙ୍କୁ ପଚାରିଲି ଆପଣମାନେ କେଉଁଠୁ ଆସିଛନ୍ତି। ମୋ କଥା ଉତ୍ତର ସବୁପ୍ରାୟ ସୁ ଦେଉଥାନ୍ତି। ସୁ କହିଲେ, ସେମାନେ ଅନ୍ୟ ଏକ ନକ୍ଷତ୍ର ଲୋକରୁ ଆସିଛନ୍ତି। ପଚାରିଲି ଆସିବାର କାରଣ, ସୁ କହିଲେ ଆସିବାର କାରଣ ଦି ଟା ପ୍ରଥମତ: ଆମେ ଏଠାରୁ କିଛି ପରିବର୍ତ୍ତିତ (Manipulation) ହୋଇ ନଥିବା DNA ସଂଗ୍ରହ କରିବୁ। ପଚାରିଲି, ପରିବର୍ତ୍ତିତ ହୋଇ ନ ଥିବା DNA ପୁଣି କଣ? ସୁ କହିଲେ, *'ଆପଣ DNA କଣ ଜାଣିଥିବେ।'* ମୁଁ ମୁଣ୍ଡ ହଲେଇଲି।

–DNA ଜରିଆରେ ଗୁଣ ପିତାମାତାଙ୍କଠାରୁ ସନ୍ତାନକୁ ଯାଏ। ସଂତାନ ନିଜକୁ ପ୍ରକୃତି ସହ କିପରି ମନେଇବ ତାହା ମଧ୍ୟ ନିର୍ଭର କରେ ତାର DNA ଉପରେ ଏବେ DNA Manipulation ବା Gene Surgery ବଳରେ ମଣିଷ ଇଚ୍ଛାମୁତାବକ ସଂତାନ ଲାଭ କରୁଛି। ବହୁବର୍ଷ ପୂର୍ବେ ଆମ ସେଠାକାର ବୈଜ୍ଞାନିକମାନେ ନିଜ ଇଚ୍ଛା ମୁତାବକ DNA କୁ ଭାଙ୍ଗିଲେ ଗଢ଼ିଲେ

– ତାପରେ ..

ଏମିତି ଭଙ୍ଗା ଗଢ଼ା କରୁକରୁ ପ୍ରକୃତି ଯେଉଁ ନକ୍‌ସା ତାର ବର୍ଷ ବର୍ଷ ଅଭିଜ୍ଞତାରେ କରିଥିଲା ତାହା ହଜିଗଲା। ଆମ ସେଠାକାର ବୈଜ୍ଞାନିକମାନେ ପୂର୍ବ ସ୍ଥିତାବସ୍ଥା ଫେରେଇ ଆଣିବା ପାଇଁ ବହୁ ଚେଷ୍ଟା କଲେ ହେଲେ କଣ ହେବ ଥରେ Biological clock ର Balance ଟା ନଷ୍ଟ ହୋଇଯିବା ଫଳରେ ଆମ ଶରୀର ସମୟ ଠିକ୍ ରଖୁନାହିଁ। ତେଣୁ ଆମେ ଆପଣମାନଙ୍କଠୁ ପରିବର୍ତ୍ତିତ ହୋଇ ନ ଥିବା DNA ସଂଗ୍ରହ କରି ଫେରିଯିବୁ। ତାଙ୍କର ଏହି କଥା ଶୁଣି ଆମେ ଡରିଗଲୁ। ସୁ ମୋ ମନ କଥା ବୁଝି କହିଲେ ଆପଣମାନଙ୍କ ଡରିବାର କିଛି ନାହିଁ। ଆମେ ଆପଣଙ୍କଠୁ କେବଳ ଦୁଇଟାମର୍ ରକ୍ତ ନେବୁ। ସେଥିରୁ ଆମେ ଆମର ଦରକାର ମୁତାବକ DNA ପାଇଯିବୁ।

ସେଦିନ ରକ୍ତ ଦେଇସାରି ସୁ ଙ୍କୁ ପଚାରିଲି ପୃଥିବୀରେ ଏତେ ଯାଗା ଥାଉ ଥାଉ ଲତାଦେଇପୁର ପରି ନିପଟ ମଫସଲ ଜାଗାଟିଏ କାହିଁକି ବାଛିଲେ।

ଉତ୍ତରରେ ସୁ କହିଲେ, ଅସଲରେ ଆମେ ଏକ ସହଜ ସରଳ ମଣିଷ

ଖୋଜୁଥିଲୁ ଯାହାର DNA ସଭ୍ୟତାର ଚାପରେ ଅଣନିଶ୍ୱାସୀ ହୋଇ ନଥିବ।

ଯେଉଁଦିନ ଆମେ ଫେରିଲୁ ସେଦିନ ସୁ ଙ୍କୁ ପଚାରିଲି, ଆପଣ ଆସିବାର ଅନ୍ୟ କାରଣଟା କହିଲେ ନାହିଁ।

ସୁ କହିଲେ, ଆସିଥିଲୁ ଦେଖିବା ପାଇଁ ମଣିଷର ବଂଚିବାର ରହସ୍ୟ।

କଣ ଦେଖିଲେ ?

'—ମଣିଷ ଏ ଯାଏଁ ନିଜ ଉପରୁ ବିଶ୍ୱାସ ହରେଇ ନାହିଁ।'

'ହୁମା' ଫେରିଗଲା। ପୀର ବାବା ପଡ଼ିଆ ଭିତରେ ରହିଗଲା ସାମାନ୍ୟ ଖାଲୁଆ ଶେତାଳିଆ ଯାଗାଟିଏ ଯେଉଁଠି କିଛି ହଳଦିଆ ଘାସ ତାର ପୂର୍ବ ସ୍ମୃତିକୁ ନେଇ ବଂଚିଥିଲା।





ସାଂପ୍ରତିକ ଓଡ଼ିଆ କଳ୍ପ ବିଜ୍ଞାନ ସାହିତ୍ୟର ଊଷର, ମରୁରେ ଏକମାତ୍ର ଓଏସିସ୍ ଡ଼ଃ ସୌମେନ୍ଦ୍ର ଘୋଷ ।

ଗଳ୍ପରେ କେତେ ବିଜ୍ଞାନ, କେତେ କଳ୍ପନା ରହିଲେ ତାହା ସାର୍ଥକ କଳ୍ପ ବିଜ୍ଞାନ ଗଳ୍ପ ହେବ, ତା'ର କିଛି ନିର୍ଦ୍ଦିଷ୍ଟ ନିୟମ ନିରୂପିତ ହୋଇନାହିଁ ଏ ଯାବତ୍ । ତେବେ ଡ଼ଃ ଘୋଷଙ୍କ 'କଳ୍ପ ବିଜ୍ଞାନ ଗଳ୍ପ'ରେ ସଂକଳିତ ତେରଟିଯାକ ଗଳ୍ପରେ ଭରିରହିଚି ବିଚିତ୍ର କଳ୍ପନା ଓ ବିଜ୍ଞାନର ମିଶ୍ରିତ ଐନ୍ଦ୍ରଜାଲିକତା । ଯାହା କେତେବେଳେ ଆମକୁ ବାନ୍ଧିରଖେ ବିଜ୍ଞାନର ଏକ ଅଲୌକିକ କଳ୍ପ ଜଗତରେ ତ ପୁଣି କେତେବେଳେ ପେଶିଦିଏ ଏକ ମହାପ୍ରଳୟର ବଳୟରେ । ଏହାଛଡ଼ା ଶୁଷ୍କ ନୀରସ ବୈଜ୍ଞାନିକ ତଥ୍ୟ ପ୍ରତିଟି ଗଳ୍ପରେ ସହଜ ସରଳ ଓ ସାବଲିଳ ଢଙ୍ଗରେ ଏପରି ରୂପାୟିତ ଯେ' ଯାହା ଡ଼ଃ ଘୋଷଙ୍କ ସିଦ୍ଧହସ୍ତର ପରିଚାୟକ ।

'ଶରୀର ରାଇଜର ଗୁମର କଥା' ଓ 'ନିଜେ ପରୀକ୍ଷା କରି ଦେଖ' ଡ଼ଃ ଘୋଷଙ୍କ ବିଜ୍ଞାନ ଭିତ୍ତିକ ଆଉ ଦୁଇଟି ବହୁ ପ୍ରଶଂସିତ ପୁସ୍ତକ । ଆଉ ମଧ୍ୟ ଏଇ ନିକଟରେ ଆମେ ପ୍ରକାଶ କରୁଛୁ ଜୀବଜନ୍ତୁଙ୍କ ବିଚିତ୍ର ମିଳନ ଓ ବଂଶ ପ୍ରକ୍ରିୟାକୁ ନେଇ ତାଙ୍କ ରଚିତ 'ମିଳନର ଛନ୍ଦ' ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସାଇଟୋ ଜେନେଟିକ୍ସରେ ପି.ଏଚ୍.ଡି. ଡିଗ୍ରୀ ପ୍ରାପ୍ତ ଡ଼ଃ ଘୋଷ ଏବେ ଓଡିଶା ଶିକ୍ଷା ବିଭାଗରେ ପ୍ରାଣୀବିଜ୍ଞାନ ପ୍ରାଧ୍ୟାପକ ।



ସାଂପ୍ରତିକ ଓଡ଼ିଆ କଳ୍ପ ବିଜ୍ଞାନ ସାହିତ୍ୟର ଊଷର ମରୁରେ ଏକମାତ୍ର ଓଏସିସ୍ ଡ଼ଃ ସୌମେନ୍ଦ୍ର ଘୋଷ ।

ଗଳ୍ପରେ କେତେ ବିଜ୍ଞାନ, କେତେ କଳ୍ପନା ରହିଲେ ତାହା ସାର୍ଥକ କଳ୍ପ ବିଜ୍ଞାନ ଗଳ୍ପ ହେବ, ତା'ର କିଛି ନିର୍ଦ୍ଦିଷ୍ଟ ନିୟମ ନିରୂପିତ ହୋଇନାହିଁ ଏ ଯାବତ୍ । ତେବେ ଡ଼ଃ ଘୋଷଙ୍କ 'କଳ୍ପ ବିଜ୍ଞାନ ଗଳ୍ପ'ରେ ସଂକଳିତ ତେରଟିଯାକ ଗଳ୍ପରେ ଭରିରହିଚି ବିଚିତ୍ର କଳ୍ପନା ଓ ବିଜ୍ଞାନର ଚିତ୍ରିତ ଐନ୍ଦ୍ରଜାଲିକତା । ଯାହା କେତେବେଳେ ଆମକୁ ବାନ୍ଧିରଖେ ବିଜ୍ଞାନର ଏକ ଅଲୌକିକ କଳ୍ପ ଜଗତରେ ତ ପୁଣି କେତେବେଳେ ପେଶିଦିଏ ଏକ ମହାପ୍ରଳୟର ବଳୟରେ । ଏହାଛଡ଼ା ଶୁଷ୍କ ନୀରସ ବୈଜ୍ଞାନିକ ତଥ୍ୟ ପ୍ରତିଟି ଗଳ୍ପରେ ସହଜ ସରଳ ଓ ସାବଲୀଳ ଢ଼ଙ୍ଗରେ ଏପରି ରୂପାୟିତ ଯେ ଯାହା ଡ଼ଃ ଘୋଷଙ୍କ ସିଦ୍ଧହସ୍ତର ପରିଚାୟକ ।

'ଶରୀର ରାଇଜର ଗୁମର କଥା' ଓ 'ନିଜେ ପରୀକ୍ଷା କରି ଦେଖ' ଡ଼ଃ ଘୋଷଙ୍କ ବିଜ୍ଞାନ ଭିତ୍ତିକ ଆଉ ଦୁଇଟି ବହୁ ପ୍ରଶଂସିତ ପୁସ୍ତକ । ଆଉ ମଧ୍ୟ ଏଇ ନିକଟରେ ଆମେ ପ୍ରକାଶ କରୁଚୁ ଜୀବଜନ୍ତୁଙ୍କ ବିଚିତ୍ର ମିଳନ ଓ ବଂଶ ପ୍ରକ୍ରିୟାକୁ ନେଇ ତାଙ୍କ ରଚିତ 'ମିଳନର ଛନ୍ଦ' ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସାଇଟୋଜେନେଟିକ୍ସରେ ପି.ଏଚ୍.ଡି. ଡିଗ୍ରୀ ପ୍ରାପ୍ତ ଡ଼ଃ ଘୋଷ ଏବେ ଓଡ଼ିଶା ଶିକ୍ଷା ବିଭାଗରେ ପ୍ରାଣୀବିଜ୍ଞାନ ପ୍ରାଧ୍ୟାପକ ।